ଏ କୃଷ୍ଣ ବଇକୁଣ୍ଠବାସୀ । ଅମ୍ଭେ ସକଳେ ବେଦଅଂଶୀ ॥
ଏ କଥା ଜାଣି କଳଙ୍କରେ । ସ୍ତୁତି କରନ୍ତି ଏ ବଚନେ ॥
ହେ ଦେବଦେବ ଚୂଡ଼ାମଣି । ଧୃତ ଶାରଙ୍ଗ ଚକ୍ରପାଣି ॥
ଗରୁଡ଼ବାହାନ ଶ୍ରୀକାନ୍ତ । ଅଚ୍ୟୁତ ନାମ ଆଦ ଅନ୍ତ ॥
ଦେବତା ହିତେ ଦଇତ୍ୟାର । ବାମନ ବଳିର ଭଷଃସ୍ୱି ॥
ବଟପତ୍ରନ ଘଟବାସୀ । ପରମବ୍ରହ୍ମ ଅବିନାଶୀ । ୧୦ ॥
ଦୂତ ସାରଥି ଦ୍ୱାରପାଳ । ଯାଦବବଂଶୀ କଂସକାଳ ॥
ଗୋବର୍ଦ୍ଧାରା ଭୁଜସ୍ତର । ଶଙ୍ଖ କମଳ ଚକ୍ରଧାରୀ ॥
ବ୍ରହ୍ମ ର ପିତା ନନ୍ଦସୁତ । ତୋର ମହିମା ଅଗୋଚର ॥
କ୍ଷୀରସାଗରେ ସର୍ପ ଶେଯ । କୋଟି ଆଦିତ୍ୟ ପ୍ରାୟ ତେଜ ॥
ରତ୍ନମୁକୁଟ ଶିରେ ଶୋଭା । କୁଣ୍ଡଳ ମଣି ଶଶିପ୍ରଭା ॥
ଅମ୍ବୁଜ-ଅରୁଣ ଲୋଚନ । ଅସୁର-ଗର୍ବବିମୋଚନ ॥
କଣ୍ଠେ କୌସ୍ତୁଭମଣି ଶୋଭେ । ବ୍ରହ୍ମାଣ୍ଡେ ପ୍ରଭବମ୍ ଦଶେ ॥
ଶ୍ରୀବତ୍ସଚିହ୍ନ ବନମାଳ । ହୃଦୟ ପରମ ଦୟାଳ ॥
ନବ ଜଳଦ କଳେବର ତଡିତଆଭା ପୀତାମ୍ବର ॥
ଭୂଷିତ ଅଷ୍ଟ-ଅଳଙ୍କାର । ଜ୍ଞାନ ବିଜ୍ଞାନ ରୂପ ତୋର ॥
ଚରଣେ ଅଷ୍ଟାଦଶ ଚିହ୍ନ । ସର୍ବ ଦେବଙ୍କ ପୂଜାସ୍ଥାନ ॥
ହେ ଯଜ୍ଞଭୋଗି ଜଗଦୀଶ । ତୋହର ମହିମା ଅଶେଷ ॥
ତୁ ହୋଇ ମନୁଷ୍ୟଶରୀର । ଧର୍ମସ୍ଥାପନେ ଅବତାର ॥
ଅସୁରବଧେ ବସୁନ୍ଧର । ବ୍ରହ୍ମାଙ୍କୁ କଲା ଯେ ଗୁହାର ॥
ବ୍ରହ୍ମା ସକଳଦେବଯୋଗ । ଘେନିବ ଦଇର ଯେ ମୂଳ ॥
କ୍ଷୀରସାଗରତଟେ ରହି । ନିଗମମନ୍ତ୍ରେ ସ୍ତୁତି କହି ॥
ତାହାଙ୍କ ସ୍ତୁତିରେ ପ୍ରସନ୍ନ । ଶୂନ୍ୟେ ଶୁଭିଲା ଗୋ ବଚନ ॥

ବ୍ରହ୍ମାଦି ଦେବଗଣେ ଶୁଣ । ଅମ୍ଭେ ଜାଣିଲୁଁ ତୁମ୍ଭ ମନ ।
ଦ୍ୱାପରଯୁଗ ହେବ ଶେଷ । ଯେ କଳିଯୁଗ ପରବେଶ ।
ଭରତଖଣ୍ଡେ ଜମ୍ବୁଦ୍ୱୀପେ । ଯମୁନାନଦୀର ସମୀପେ ।
ଉତ୍ତର ମଥୁରା ନଗରେ । ମନୁଷ୍ୟରୂପେ ଅବତରେ ।
ଯାଦବ ବସୁଦେବ ଘରେ । ରୋହିଣୀ ଦେବକୀ ଉଦରେ ।
ହରି ଅଖିଳ ରୂପ ବେନି । ପ୍ରକାଶ ପୂର୍ଣ୍ଣ ଅଂଶ ଯେନି ।
ବଢ଼ିବୁଁ ଯାଇ ଗୋପପୁରେ । ଗୋପ ନାୟକ ନନ୍ଦଘରେ ।
ଗୋରୁ ଗୋପାଳ ଗୋପୀ ସଙ୍ଗେ । ବନେ ବିହରେ ନାନାରଙ୍ଗେ ।
ପୂତନା ଆଦି କଂସାସୁର । ନାଶିବୁଁ ଦାନବ ଅପାର ।
ଦନ୍ତବକ୍ତ୍ର ମହାମଦ । କାଳଯବନ ଜରାସନ୍ଧ ।
ଭାରତ କୁରୁବଳ ଧ୍ୱଂସି । ନିର୍ବଂଶ ଯେତେ ଯଦୁବଂଶୀ ।
ଧ୍ୱଂସ କରି ଦସ୍ୟୁଜନ । ତେବେ ଆସିବୁଁ ନିଜସ୍ଥାନ ।
ଏ କଥା ସତ୍ୟ ଅମୃତ । ହେ ବ୍ରହ୍ମା ବସ୍ତୁ ନିଶ୍ଚିତ ।
ଯାଅ ଯେ ଯାହାର ଭୁବନ । ନିତ୍ୟକର୍ମରେ ଦିଅ ମନ ।
ଏମନ୍ତ ବୋଲି ହେଲେ ତୁନି । ବ୍ରହ୍ମାଦି ସର୍ବଦେବ ଶୁଣି ।
ଆନନ୍ଦେ ହୋଇ ଭରଭର । ଅଷ୍ଟଲୋଚନେ ଅଶ୍ରୁ ଝର ।
ସପ୍ରେମ ହୋଇ ବିଲୋଚନ । ବ୍ରହ୍ମାଙ୍କୁ କଲେ ଆଲିଙ୍ଗନ ।
ସହସ୍ରନେତ୍ରେ ଜଳଯୁକ୍ତ । ଗଦ୍ଗଦ ପୁଲକ ପୂରିତ ।
ନାରଦ ଅତି ପ୍ରେମଭୋଳେ । ପଡ଼ିଲେ ବ୍ରହ୍ମା ପାଦତଳେ ।
ବୀଣା ବଜାଇ ନୃତ୍ୟ କରି । ବୋଇଲେ ବୋଲ ହରି ହରି ।
କିନ୍ନର ଗନ୍ଧର୍ବ ଯେ ମୁନି । ପୁଲକ ହୋଇ ବାକ୍ୟ ଶୁଣି ।
ଆନନ୍ଦେ ଅଶ୍ରୁ ଜଳ ଝର । ଏହି ଅରତେ ହୋଇ ଆତୁର ।
ବ୍ରହ୍ମାର ମନେ ହେଲା ସାଧ । ମେଲାଣି ପାଇବୁଁ ପ୍ରସାଦ ।୫୦।

ଅନ୍ତରଯାମୀ କୃଷ୍ଣସ୍ୱାମୀ । ଶୂନ୍ୟରୁ ଏକ ଫୁଲ ଖସି ॥
ଉଛଳ ସୁଗନ୍ଧ ସମୀର । ବିଧାତା ଛୁଅଣ ବାହାର ॥
ଯତନେ ବ୍ରହ୍ମା କରସ୍ଥଳେ । ଲକ୍ଷ ଗୁଣେ ହେଲା ଦିବ୍ୟମାଳେ ॥
ସେ ମାଳ କଳ୍ପଗୁଣ୍ଡି ଧରି । ଅନେକ ମାଳ ଗନ୍ଥୁଁ ଯିର ॥
ବ୍ରହ୍ମା ପଦ୍ମମ ମାଳ ନେଇ । ଗୋପାଳକୃଷ୍ଣ କଣ୍ଠେ ଦେଇ ॥
ଶଙ୍କର ଶୁଭମାଳ ନେଲେ । ଜଗମନ୍ଦନ କଣ୍ଠେ ଦେଲେ ॥
ଅମରଗୁରୁ ମାଳେ ନେଇ । ସୁରପତି କଣ୍ଠେ ଦେଇ ॥
ତେତିଶ କୋଟି ଦେବଗଣେ । ମାଳ ଘେନିଲେ ଜଣେ ଜଣେ ॥
ଗନ୍ଧର୍ବ କିନ୍ନର ଯେ ମୁନି । ଏକୈକ ମାଳ ସର୍ବେ ଘେନି ॥
ଶେଷ ରହିଲା ମାଳ ଫୁଲ । ପୃଥ୍ୱୀ ସମସ୍ତ ତା ପାଇ । ୬୦ ।
ଦେଖି ସେ ଫୁଲର ମହିମା । ପରମ ଆନନ୍ଦରେ ବ୍ରହ୍ମା ॥
ହଂସ ବୃଷଭ ଗଜ ମେଷ । ଏ ଆଦି ବାହାନ ବିଶେଷ ॥
ଯାଇ ମିଳିଲେ ଯେଝାସ୍ଥରେ । ତୋ ଆଜ୍ଞା ମାଳ ଘେନି ଶିରେ ॥
ଆମ୍ଭେ ଯେ ଦେବଙ୍କ ନନ୍ଦନୀ । ତୋ କଥା ଦେବମୁଖୁଁ ଶୁଣି ॥
ଆଦ୍ୟ ଲଭ ବୃନ୍ଦାବନେ । ରହିଲୁଁ ବ୍ରଜବାସିଗଣେ ॥
ଏ ସ୍ଥାନ ଆମ୍ଭେ ସାଧ କରି । ଆସି ହୋଇଲୁଁ ବ୍ରଜନାରୀ ॥
ତୋର ସୁନ୍ଦରରୂପ ଦେଖି । ସମସ୍ତେ ହେଲୁ ଆମ୍ଭେ ସୁଖୀ ॥
ତୁ ଆମ୍ଭଭାବ ଅନୁସରି । ଆମ୍ଭଙ୍କୁ ଅନୁଗ୍ରହ କରି ॥
ଏବେ ନିଗ୍ରହ କିମ୍ପା କରୁ । ଦୟାସାଗର ବାହାରରୁ ॥
ଯେବେ ଆମ୍ଭର ଅଛି ଦୋଷ । ତୁ କ୍ଷମାନିଧି ପୀତବାସ । ୭୦ ।
ଭୃଗୁ ପ୍ରହାର ପାଦ ତୋତେ । ସେ ଦୋଷ ନ ଧରିଲୁ ଚିତ୍ତେ ॥
ତା ପାଦ କଲୁ ନିଜ ଚିହ୍ନ । ଦେହ ଅନ୍ତରେ ନୋହେ ଭିନ୍ନ ॥
ଏଣୁ ତୁ ପରମ ଦୟାଳୁ । ଏବେ ତୁ ସେ ସ୍ୱଭାବ ନ କଲୁ ॥

ଏରୂପେ ଶୋକ ସ୍ନେହ ଭୋଳେ । ସେ ନବ୍ୟାଙ୍ଗନା ଯାଶୋଧରେ ॥
କରୁଣେ କରନ୍ତି ରୋଦନ । ହେ କୃଷ୍ଣ ଯଶୋଦାନନ୍ଦନ ॥
ଅବୋଧ ଅବଳା କୁମାରୀ । ଅମ୍ଭେକ ନୋହୁଁ ଗୋ ବଉରୀ ॥
କଣ୍ଠାଗ୍ରେ ଭାବ ଘୋର ବନେ । ଏବେ ପଳାଇଗଲୁ କେଉଁଣେ ॥
ଏରୂପେ ଭାବ ଉଚ୍ଚସ୍ୱର । ଶୁଖିଲା ସୁରଙ୍ଗ ଅଧର ॥
ନକୁଳ ଅମ୍ବୁଜେ ମିଶି । ମୁଖ ଚନ୍ଦ୍ରମା ପ୍ରାୟେ ଦିଶି ॥
ସବୁଜେ ଦେବଙ୍କ କୁମାରୀ । ଅତି ସୁନ୍ଦରୀ ସୁକୁମାରୀ ॥୮୦॥
ନବମ ଦଶା କରିହଇ । ମୂର୍ଚ୍ଛିରେ ପଡିଲେ ଭୂମିର ॥
ରୋଦଣ କରନ୍ତି ରୋଦନ । ହା କୃଷ୍ଣ ଗୋପୀଙ୍କ ଜୀବନ ॥
ଦେଖାଅ ଶ୍ରୀମୁଖ ମଣ୍ଡଳ । କରାଅ ନୟନ ସଫଳ ॥
ଏରୂପେ ଦେବ କନ୍ୟାଗଣେ । କୃଷ୍ଣ ଖୋଜନ୍ତେ ବୃନ୍ଦାବନେ ॥
ଶ୍ରୀଜ ବୋଲନ୍ତି ମନ ଶୁଣ । ମୁନିଙ୍କ ଶ୍ରୀମୁଖୁଁ ବଚନ ॥
ଏ କୃଷ୍ଣକଥା ସୁବିଚିତ୍ର । ଲେଖିଲେ ପ୍ରେମପଞ୍ଚାମୃତେ ॥
ନବ କୁମାରୀ ଦ୍ୱିଜ ସୁତ । ଏ ଗୀତ କଲେ ଉଚ୍ଚାରଣ ॥
ସୁଜନେ ଏଣେ କର ଲୟ । ଯିବ ସକଳ ସଂଶୟ ॥

ଇତି ଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତି ନିବେଦ ଭାଗବତେ ମନିଶ୍ରୀ ନ ଶୁକ ପରୀକ୍ଷିତସଂବାଦେ ଦେବକନ୍ୟା ରୋଦନ ନିର୍ଣ୍ଣୟ କଥନେ ନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମ ଅଧ୍ୟାୟଃ ।

ଶ୍ରୀଜ ବୋଲନ୍ତି ମନ ଶୁଣ । ନୃପଙ୍କୁ କହେ ତପୋଧନ ॥
ଯଷ୍ଠିମ ଦଶେ ମୂଳଅଂଶୀ । କୃଷ୍ଣ ଅଦେଖେ ଥିଲେ ବସି ॥
ବନ ସଘନେ ସ୍ୱଚ୍ଛେ ଛନ୍ଦ । ସେ ନଳ ଶରଣ ସୁନ୍ଦର ॥

ପୂର୍ବ ତପସ୍ୟାତେଜବଳେ । ଜ୍ଞାନ ପ୍ରକାଶିଲା ନିଗେଲେ ।
ଜାଣିଲେ ଅମ୍ଭେ ମୁନିଅଂଶୀ । ଏ କୃଷ୍ଣ ଶ୍ରୀ ଗୋଲକବାସୀ ।
ଏମନ୍ତ ଜ୍ଞାନ ଘେନି ମନେ । ସ୍ତୁତି କରନ୍ତି ଏ ବଚନେ ।
ହେ ମହାଯୋଗି ଯୋଗେଶ୍ୱର । ଅନାଦି ଅକ୍ଷୋଧ୍ୟସାର ।
ସୃଷ୍ଟି ପାଳନ ସଂହାର ଗୁଣି । ଧ୍ୟାନେ ଚିନ୍ତନ୍ତି ଯୋଗେ ମୁନି ।
ଧର୍ମ ସ୍ଥାପନେ ଅବତାର । ଯୋ ରୂପ କାର୍ଯ୍ୟ ଅନୁସାର ।
ଯେ ରୂପେ ସାଧି ଯେଉଁ କାର୍ଯ୍ୟ । ସେରୂପ ହେଉ ଦେବରାଜ ।୧୦।
ପ୍ରଥମେ ମୀନରୂପ ଧର । ବେଦ ଆଣିଲୁ ଶଙ୍ଖା ମାର ।
ଦ୍ୱିତୀୟେ କୂର୍ମରୂପ ହୋଇ । ମନ୍ଥନେ ମନ୍ଥାଇ ସାଗର ।
ଶୂକରବରାହରୂପ ଧର । ଅବନୀ ଯାଉଛୁ ଉଦ୍ଧର ।
ନୃସିଂହରୂପ ଅସମ୍ଭବ । ଚିରିଲୁ ହିରଣ୍ୟ ଦାନବ ।
ଦ୍ୱିଜବାମନରୂପ ଧର । ଛଳିଲୁ ବଳିଦଣ୍ଡଧାରୀ ।
ପୁଣି ପରଶୁରାମରୂପେ । କ୍ଷତ୍ରି ମାରିଲୁ ମହାକୋପେ ।
ରାବଣ ରାମରୂପେ ମାର । ତାଡକା ଅହଲ୍ୟା ଉଦ୍ଧର ।
ଶ୍ରୀ ବଳଭଦ୍ର ଅବତାର । ହଳ ମୂଷଳ ଘେନି କର ।
ନିର୍ମଳତନୁ-କଳେବର । ସ୍ୱପରପଣି ମଣିଧାର ।
ପ୍ରଲମ୍ବାସୁର ହନନ । ଦ୍ୱିଦମ୍ବରସେ ଚୋଷମନ ।
ହୋଇ ବଉଧ ଅବତାର । ହୁବସ୍ତୁ ଦସ୍ୟୁ ର ସାବର ।
ଯଜ୍ଞରେ ପଶୁବଧ ଦେଖି । ବେଦ ନିନ୍ଦିଲୁ ପଦ୍ମଆଖି ।
ବୋଇଲୁ ବେଦେ ପଶୁବଧ । ଏଣୁ ଏ ସମସ୍ତ ନିଷେଧ ।
ବ୍ରହ୍ମଣେ ଅଛ ଅବିବେକ । ଏ ବେଦ ଅସ୍ତ୍ରର ବଧକ ।
ଏହାର ବୋଲେ ଅମ୍ଭା ମାର । ମୋର ମହିମା ନ ସୁମର ।
ମୁଁ ଆତ୍ମାରୂପେ ସର୍ବଭୂତେ । ନିଜସ୍ତେ ବସଛି ସାକ୍ଷାତେ ।

ମୋତେ ବଧନ୍ତି ଏ ପାମର । ନ ବୁଝି ବେଦତତ୍ତ୍ୱ ସାର ॥
ଦସ୍ୟୁବଳିର ଯେତେକ କର୍ମ । ଏ ସବୁ ଅଟଇଁ ଅଧର୍ମ ॥
ମୋ'ର ସମ୍ମତ ଯହିଁ ନାହିଁ । ସେ କର୍ମେ ଧର୍ମ ଲେଶ ନାହିଁ ॥
ସ୍ୱର୍ଗଭୋଗକୁ ଇଚ୍ଛା କରି । ଯଜ୍ଞ କରନ୍ତି ପଶୁ ମାରି ॥
ତାହାଙ୍କୁ ସ୍ୱର୍ଗପଥ ଦେଇ । ନରକେ ନିବସନ୍ତି ଯାଇ ॥
ଯେସନ ପଥେ ଯାଉ ଥାଇ । ବୃକ୍ଷମୂଳରେ ଦଣ୍ଡେ ରହି ॥
ସେ ବୃକ୍ଷମୂଳେ ଥିବା ମିଛ । ପଥ ଚଳିବାଟି ପ୍ରତ୍ୟକ୍ଷ ॥
ଯେସନ ସ୍ୱାମିର ବିୟୋଗ । ସହଗାମିନୀ କରେ ଭୋଗ ॥
ଚନ୍ଦନ ପାନ ଫୁଲ ବାସ । ଶଙ୍ଖ ମହୁରୀ ବାଦ୍ୟଘୋଷ ॥
ତାହା'ଙ୍କୁ ଦେଖି ପ୍ରାପ୍ତ କରି । ବେଢ଼ି ଦେଖନ୍ତି ନର ନାରୀ ॥
ଏ ଭୋଗ କେତେ କାଳ ସର । ଅନଳେ ପଡ଼ିବା ନିସ୍ତର ॥
ଏରୂପେ ଯଜ୍ଞ ଅଶ୍ୱମେଧକାରୀ । ସ୍ୱର୍ଗେ ବସନ୍ତି ଦିନ ଚାରି ॥
ନରକେ ପଡ଼ନ୍ତି ନିର୍ଭରେ । ଯାବତ ଚନ୍ଦ୍ର ଦିବାକରେ ॥
ଯେସନ ଗୁରୁନିନ୍ଦାକରେ । ନରକ ଯାନ୍ତି ଅନ୍ଧକାରେ ॥
ସେ ଆତ୍ମାବଧ ପାପସୀମା । କେ କହି ପାରେ ତା ମହିମା ॥
ଏ କଥା ଶୁଣି ବିପ୍ର ବେଦେ । ଆସି ପଡ଼ିଲେ ଚୋର ପାଦେ ॥
ଲଜ୍ଜା ହୋଇଲେ ଯୋଡ଼ି କର । ଭୟେ କମ୍ପନ୍ତି ଥରହର ॥
ହେ ବନ୍ଧୁ କରୁଣାସାଗର । ଧର୍ମପାଳନେ ଅବତାର ॥
ତୋର ଶ୍ରୀମୁଖେ ଜନ୍ମା ବାଣୀ । ବେଦ ଯେ କର୍ଣ୍ଣପଥେ ଶୁଣି ॥
ବେଦକର୍ମିର ଏ ବ୍ରହ୍ମାଣ୍ଡ । ଦୋଷ କ୍ଷମିବ କର ଦଣ୍ଡ ॥
ଭୋ ନାଥ ଏ ବେଦକର୍ତ୍ତାର । ଯେବେ ପାତକ କରିଥାଇ ॥
କ୍ଷମିଥ ହେ ତଲ୍ଲ ଭାଳି । ଆମ୍ଭ ମନୁଷ୍ୟ ବଶ ଥାଇ ॥
କର୍ପୂର କସ୍ତୁରୀ ଚନ୍ଦନ । ମଧୁ ଔଷଧ ନାନା ବର୍ଣ୍ଣ ॥

ଯେ ପ୍ରାଣୀ ଯେ ଦ୍ରବ୍ୟ ଲୋଡ଼ଇ । ତାହାକୁ ପ୍ରାପତ ହୁଅଇ ॥
ଅମ୍ଭେ ଯେ ତାଙ୍କୁ ଉଚ୍ଚସ୍ବର । ସକଳ ଧର୍ମ ଦୟାପାର ॥
ହେ ଏହା ଶୁଣି ଜାହ୍ନ ବର୍ଣ୍ଣେ । ବ୍ରାହ୍ମଣ ଆଦି ଶୁଦ୍ରବର୍ଣ୍ଣେ ॥
ଯେ ପ୍ରାଣୀ ଜାଣେ ସବୁ କର୍ମ । ସତତେ କରଇ କୁକର୍ମ ॥
ଯେଣୁ ଏ କର୍ମର ଅଧୀନ । କର୍ମ ସତତ ଏ ବାହାନ ॥
ସତତ ଯେଉଁ ପଥେ ନେଇ । ତୁରଙ୍ଗ ସେ ପଥେ ଚଳଇ ॥
ଏଥି ପ୍ରାଣୀର କି ଅପୂର୍ବ । ବ୍ରହ୍ମାଦି କର୍ମେ ଆତସାତ ॥
ଏ କର୍ମ ଅଛି ବଳସ୍ଥୁଲ । ଏଥେ ବନ୍ଧନ ଏ ସଂସାର ॥
ଯାହାର ପୂର୍ବଭାଗ୍ୟ ବଶେ । ସେ ପ୍ରାଣୀ ମୋର ରସେ ରସେ ॥
ଯାହାରେ ମୋର କୃପା ଥାଇ । ଏ କର୍ମବନ୍ଧନ ଫିଟଇ ॥
ଦଳା ଉଜ୍ଜ୍ୱଳ ବେଦ ପାଶ । ମୋର ବକ୍ଷାସେ ହୋନ୍ତି ନାଶ ॥
ଲକ୍ଷ୍ମୀମନ୍ତି ତାକୁ ଦେଇ । ସେ ଦେଉଠନୋଦ କର ନେଇ ॥
ତୋହଲେ କେ ଯିବ ଉତ୍ତର । ବ୍ରହ୍ମା ଶଙ୍କର ଆଦି କରି ॥
ବନର ଶୁଖ ପ୍ରାପ୍ତ ଭ୍ରମେ । ମିଥ୍ୟା ବନ୍ଧନ ମିଥ୍ୟା କର୍ମେ ॥
ଏ ମର୍ମ ଏତେ ମାୟାମୟୀ । କଥ୍ୟକେ ଦେଖି ନ ଦେଖଇ ॥
ଶୁଣି ନ ଶୁଣଇ ଶ୍ରବଣେ । ମୁଖେ ବଖାଣି ନ ବଖାଣେ ॥
ଜାଣି ନ ଜାଣିଲ ପଶ୍ଚାତେ । କର୍ମଥାଯ୍ୟରେ ପ୍ରାଣୀ ଭଦେ ॥
ଜଡ୍ୟ ଶୁଣଇ ସବୁ ମନ୍ତ୍ର । ମୁହେଁ କହଇ ଧର୍ମତତ୍ତ୍ୱ ॥
ଅନ୍ତରେ ସର୍ବଧର୍ମ ଜାଣେ । ଅଧର୍ମ କରଇ ସତତେ ॥
ମାଂସଭକ୍ଷଣେ ଦର ସଧ । ଯଜ୍ଞବାହାରେ ପଶୁବଧ ॥
ବୃକ୍ଷ ବାହାରେ ନ ସ୍ୱସଙ୍ଗ । ଏକାଦଶୀରେ ଅନ୍ନ ଭୋଗ ॥
କରନ୍ତି ବଳ ଲୋଡମନେ । କହ ଏ ତାହାର ବରତକ ॥
କର୍ଦ୍ଦମ କର୍ମ ଅବବେକେ । ବଧିରେ ପଡ଼ିବେ ନରକେ ।୨୦।

ଯେ ଦସ୍ୟୁ ଧର୍ମ କର୍ମ କରେ । ସେ ସ୍ୱର୍ଗେ ବସିବେ ବେଗରେ ॥
ଯେ ଯାହା କର୍ମେ ସେ ପ୍ରବେଶ । ଏଥି ଅମ୍ଭର କେଉଁ ଦୋଷ ॥
ତୋ ଆଗେ ଆମ୍ଭର ଗୁହାରି । ଏ କଥା ବୁଝ ଭଲ କରି ॥
ତୁ ଦେବଦେବ ସର୍ବେଶ୍ୱର । ଦୋଷ ଦସ୍ୟୁର ଦଣ୍ଡ କର ॥
ଏରୂପେ ବେଦ ମନ୍ତ୍ର ଶୁଣି । ପୁଣି ସ୍ଥାପିଲୁ ବେଦ ଆଣି ॥
ପୂଜିଲୁ ବ୍ରାହ୍ମଣଚରଣ । ବୋଇଲୁ ବେଦଟି ପ୍ରମାଣ ॥
ଯେତେ କଳକରୂପ ଧର । ଦାରୁଣ ଦାନବ ସଂହାର ॥
ଏରୂପେ ନାନା ଅବତାର । ପ୍ରକାଶ କାର୍ଯ୍ୟଅନୁସାର
ତୋହର ରୂପ ନୋହେ ମୂଳ । ଭକତ ଭାବକୁ ଯେ ତୋଳ ।
ତୋ ରୂପ ଅଟଇ ଅଦୃଶ୍ୟ । ଭକତଭାବେ ତୋ ପ୍ରକାଶ ।୮୦।
ଶାସ୍ତ୍ରର ଧାମର ମୂର୍ଦ୍ଧନ । ଆମ୍ଭେ ଜାଣିଲୁ ସବେ ଶୁଣି ।
ତୋହର ସ୍ୱେଚ୍ଛାସ୍ଥ ଧାମ । ଅତି ଉତ୍ତମ ଅନୁପମ ।
ଏ ଧାମ ଅନୁସାରେ ତୋର । ଦେଖିଲୁଁ ଯାବତ ବେଭାର ।
ତୁ ସର୍ବଦେବତାଙ୍କ ଇଷ୍ଟ । ଭୁଞ୍ଜିଲୁ ସବୁର ଉଚ୍ଛିଷ୍ଟ ।
ବ୍ରହ୍ମ ଚ ଇନ୍ଦ୍ର ଦାସ ତୋର । ସଙ୍ଗୀତ ସୁଗ୍ରୀବ ବାନର ।
ତାହା ଲଗ୍ନୁ ପାଦତଳେ । ସ୍ୱନ ଯଶୋଦା ଚନ୍ଦ୍ରକଳେ ।
ଯେ ପିତା ଆଜ୍ଞା ଭ୍ରଷ୍ଟକଲେ । ଜଗତେ ପଡ଼ିଲ ଗର୍ବରେ ।
ତାର ସକାଶଁ ପିତା ନାଶ । ଏମନ୍ତ ଯେ କୁଳଯାଉଁଷ ।
ତାହାକୁ ଇନ୍ଦ୍ରପଦ ଦେଲୁ । ଆପଣେ ଆଗେ ପ୍ରଣମିଲୁ ।
ଗଜେନ୍ଦ୍ରାଙ୍କୁ ବ୍ରହ୍ମ ପଦ । ବୈକୁଣ୍ଠେ ଦେଲୁ ବେଶ୍ୟାଦାସୀ ।
ଯେ ଯଜ୍ଞ କଲ ବେଦମତେ । ସର୍ବସ୍ୱ ଦାନ କଲା ତୋତେ ।
ଏଡ଼େ ଧାର୍ମିକ ଚକ୍ରବର୍ତ୍ତୀ । ତାହାକୁ ଦେଲୁ ଅଧୋଗତି ।
ଦେବଙ୍କ ଫୁଲ ଶୋଷଗଲୁ । ସ୍ୱରସା ମଦ ତୋଷ କଲ ।

ବଇକୁ ବେଗୀରେ ବଞ୍ଚାଇ । କନ୍ୟାକୁ ଆଣିଲୁ ଗୃହର ।
କ୍ଷତ୍ରିୟ ଧର୍ମ ବଡ଼ କଲୁ । ଅଠର ବେଳ ପଲାଇଲୁ ।
ଚରଣେ ସେବେ କମଳନୀ । କାହିଁ ବସାଉ ଗଉଡ଼ୁଣୀ ।
ଗୋରୁ ବ୍ରାହ୍ମଣ ସ୍ତ୍ରୀବଧ । ବୃଷ ସ୍ୱଜବାଟି ଅପ୍ରାଧ ।
ଯେ ଷଇଦାସ୍ଥ ପ ପଞ୍ଚଳ । ଠୁଳେ ବର୍ଣ୍ଣଇଅଛୁ ଅଳ ॥
ଏମନ୍ତ ସୁମରିବା କେବେ । ଏରୂପେ ତୋର କର୍ମଯୋଗେ ।
ଧର୍ମପ୍ରବଣ ଧାତ୍ରୀ ଯୋଳୁ । କେବଳ ଗ୍ରାବମାଝ ଟଳୁ ।୧୦୦।
ଏଣୁ ତୋ ଗ୍ରାବଗ୍ଧ ସ୍ମୀ ଦାସ । ଅକନ୍ତ୍ର ଦାମ ଅନୁପମ ।
ବୁଝିଲୁଁ ତୋହର ବୃତ୍ତାନ୍ତ । ତୋ ରହୁଁ ବଡ଼ ତୋ ଭକତ ।
ଗଙ୍ଗା ତୋ ପାଦୋଦକ ଜାଣି । ଶିରେ ଧରଲେ ଶୂଳପାଣି ॥
ଭୁ ନଜ ଭକ୍ତପାଦ ଧୋଉ । ଅଧର କେଶ ଶିରେ ଦେଉ ।
ଶ୍ରୀଅଙ୍ଗ ବ୍ୟାପ୍ତ ଭଗବାନ । ନ ଛାଡୁ ଭକ୍ତପାଦ ତନୁ ।
ଚରଣତଳେ ବ୍ରହ୍ମ ଏବେ । ଚରଣେ ଥିବ ଅବା କେବେ ।
ସେ କର୍ମ ତୋର ମନ ଜାଣେ । ଅମ୍ଭେ ଜାଣିଲୁ ଅନୁମାନେ ।
ଏଣୁ ତୋ ଭକତ ମହିମା । ତୋ ରହୁଁ ଅଛି ପୁଣ୍ୟସୀମା ।
ଯୋ ଭକ୍ତ ଯେଠାରେ ବସନ୍ତି । ସେ ମହାପୁଣ୍ୟ କ୍ଷେତ୍ରଭୂମି ।
ସକଳ ତୀର୍ଥ ଏକମେଳେ । ଥାନ୍ତି ତୋ ଭକ୍ତପାଦତଳେ ।
ତୋ ଭକ୍ତ ଭୋଜନେ ତୃପତ । ଅଶେଷ ଯଜ୍ଞେ ପୁଣ୍ୟକୀର୍ତ୍ତି ।
ଗୋ ଗଜ ଅଶ୍ୱ କନ୍ୟା ଦାନ । ଅନେକ ବସ୍ତ୍ରେ ମିଷ୍ଟ ଅନ୍ନ ।
ଭୂମି ସୁବର୍ଣ୍ଣ ତୋଟା ଜଳ । ବ୍ରାହ୍ମଣ ଶାସନ ଦେଉଳ ॥
ସଙ୍କ୍ରାନ୍ତ ତୀର୍ଥ ବ୍ରତ ତପ । ସୂର୍ଯ୍ୟଗ୍ରହଣ ଦାନ ଜପ ।
ପୂଜିବା ଶମ୍ଭୁ ଅପ୍ରମିତ । ଶ୍ରୀ ଶାଳଗ୍ରାମ ଲକ୍ଷ୍ମୀଯୁକ୍ତ ।
ଏ ଆଦ ନାନା ପୁଣ୍ୟ କରି । ନୁହେ ତୋ ଭକ୍ତସେବା ସରି ।

ତୁ ଏବେ ଉଦରବରରେ । ରହିଛୁ ଗଉଡ଼ି ଭୁବନେ ॥
ଅଖିଳବ୍ରହ୍ମାଣ୍ଡନାୟକ । ହୋଇଛୁ ତୁ ପଶୁପାଳକ ॥
ପୂର୍ବେ ଯେ ନନ୍ଦ ବସୁଦେବ । ଅତି ପୀରତି ମିତ୍ରଭାବ ॥
ବନ୍ଧୁର ହେଲେ ନେହଭରେ । ଯିବା ପୁଷ୍କର ପର୍ଯ୍ୟଟନେ ॥
ବୟସ ଗଲା ଉଭଭାଗ । ହେବେହେଁ ମୋହଲା ବୈରାଗ୍ୟ ॥
ବ୍ୟର୍ଥେ ବଞ୍ଚିଲୁଁ ଏବେ ତନ । ନ ଭଜ ଗୋବିନ୍ଦଚରଣ ॥
ଅଳପ ରହିଛି ବୟସ । ଏ ଦେହେ ବୃଦ୍ଧଲକ୍ଷେ ରସ ॥
କୃଷ୍ଣର ଜନ୍ମଲୀଳା ସ୍ଥାନ । ସ୍ଥଳ ହୋ ହେବା ଦର୍ଶନ ॥
ଯେ ତାହା ପୁଣ୍ୟତୀର୍ଥ ଶ୍ରେଷ୍ଠ । ରହିବା ଦିନ ଦିନ ସପ୍ତ ॥
ଏହି ବନ୍ଧୁର ମୂଳ ହେଲେ । ଯେ ଯାହା ଭକତିକୁ ଗଲେ ॥
ପୁତ୍ରକୁ ସମର୍ପି କୃଷ୍ଣ । ବାହାର ହେଲେ ବସୁଦେବ ॥
ମିଳିଲେ ନନ୍ଦର ମନ୍ଦିରେ । ସେ ହେଲେ ମଉଜ ବେଗରେ ॥
ଘର ଦେଖିଲେ ବସୁଦେବ । ନନ୍ଦର ବସ୍ତୁତ କୃଷ୍ଣ ॥
ଅତି ବାଲକ ସୁତା ସୁତ । ସମ୍ପଦ ନ ସପେ ବସ୍ତୁତ ॥
ଏ ଯେବେ ଦେଶାନ୍ତରେ ଯିବେ । ହେମନ୍ତେ କୃଷ୍ଣ ବଞ୍ଚିବେ ॥
ପାଉବେ ଅନ୍ନବସ୍ତ୍ରେ କଷ୍ଟ । ହୋଇବ ସବୁଧର୍ମ ନଷ୍ଟ ॥
ଲୋକେ କରିବେ ଉପହାସ । ଅମ୍ଭଙ୍କୁ ହେବ ଅପଯଶ ॥
ଏ କଥା ବନ୍ଧୁର ମନରେ । ନନ୍ଦକୁ କହିଲେ ବେଗରେ ॥
ହେ ମିତ୍ର ତୁମ୍ଭେ ଯେବେ ଯିବ । ତେ ତୁମ୍ଭ ପୁତ୍ରେ ପୋଷିବ ॥
ସମର୍ଥ ହୋଇବେ ତୁମ୍ଭ ସୁତ । ସମ୍ପଦ ନ ଦେଖ ବସ୍ତୁତ ॥
କୃଷ୍ଣ ଚରଣ ଅନାଥ । ଏ ଯେ ନିନ୍ଦିତ ଧର୍ମପଥ ॥
ପାଉବେ ଅନ୍ନବସ୍ତ୍ରେ କଷ୍ଟ । ହୋଇବ ସବୁଧର୍ମ ନଷ୍ଟ ॥
ହେ ମିତ୍ର ତୁମ୍ଭେ ଘରେ ଥାଅ । ମେଲଣି ଅଜ୍ଞା ମୋତେ ଦିଅ ॥

ଯେ ଧର୍ମ କରନ୍ତ ସାଧନ । ଅଧେ ତୁମ୍ଭର ବୋଲି ଜାଣ ॥
ଏ କଥା ସତ୍ୟତ ମୋହର । ଏଥକୁ ସାକ୍ଷୀ ଦିବାକର ॥
ଏକ୍ଷଣି ମେଲାଣି ହୋଇବ । କ୍ଷେତ୍ରେ ମିଳି ସର୍ବନ୍ତୁଁ ମୁଁ ଯିବ ॥
ଏମନ୍ତ ବୋଲି ଅନ୍ତର୍ହିତ । ତୁହେଁ ହୋଇଲେ ହୋଲାନ୍ତର ॥
କୁଣ୍ଡିରେ ନ ତୁଟେ ବରତ । ପୁଣିହିଁ ଶୁଣି ଅଲଙ୍କତ ॥
ତୁହେଁ କାନ୍ଦିଲେ ଉଚ୍ଛ୍ୱାସରେ । ମଉନବିଚ୍ଛେଦ ସ୍ତବରେ ॥
ନନ୍ଦଙ୍କୁ ପ୍ରବୋଧନ କରି । ଗଲେ ବସୁଦେବ ବାହାର ॥
ଗୟାରେ ପିତୃଶ୍ରାଦ୍ଧ କଲେ । ଗୋମତୀ ଗୋଦାବରୀ ଗଲେ ॥
ଶ୍ରୀ ବାରାଣସୀ ବୈଦ୍ୟନାଥ । ଗମିଲେ ସେ ଦୁର୍ଗମପଥ ॥
ପ୍ରୟାଗତୀର୍ଥେ ପ୍ରବେଶିଲେ । ଗଣ୍ଡକୀ ତୀର୍ଥେ ସ୍ନାନ କଲେ ॥
ଦ୍ୱାରକା ସାଗରରେ ସ୍ନାନ । କୁରୁକ୍ଷେତ୍ରକୁ ପ୍ରଦକ୍ଷିଣ ।୧୫୦।
ମଥୁରା ବ୍ରଜ ବୃନ୍ଦାବନ । ଯମୁନା କଦାଚଳେ ସ୍ନାନ ॥
ସରଯୂ ନନ୍ଦିଗ୍ରାମ କରି । ଦେଖିଲେ ଅଯୋଧ୍ୟା ନଗରୀ ॥
ଶ୍ରୀ ସେତୁବନ୍ଧ ରାମେଶ୍ୱର । ଏରୂପେ ଭ୍ରମିଲେ ଅପାର ॥
ବରାହକ୍ଷେତ୍ର କୂର୍ମନାଥ । ଶଉରୀ ନାରାୟଣ ପଥ ॥
ଶ୍ରୀ ଚନ୍ଦ୍ରକୂଟ କପିଳାସ । ଏ ଆଦି ପର୍ବତ ବିଶେଷ ॥
ଯେ ତୀର୍ଥକ୍ଷେତ୍ରେ ଶୁଦ୍ଧଧର୍ମ । ଶ୍ରୀ ଗଙ୍ଗାସାଗରସଙ୍ଗମ ॥
ଯାଜ୍ଞକ୍ଷେତ୍ରେ ପ୍ରବେଶିଲେ । ତ୍ରିବେଣୀସ୍ନାନ ଦାନ କଲେ ॥
ମହାନଦୀରେ କରି ସ୍ନାନ । ଭୁବନେଶ୍ୱର ଦରଶନ ॥
ତହିଁ ରହିଲେ ସପ୍ତ ଦିନ । ଦେଖିଲେ ଶ୍ରୀ କପିଳମୁନି ॥
କପିଳେଶ୍ୱର ଶିବସ୍ଥଳ । ନିକଟେ ଶୁଣି ନୀଳାଚଳ ।୧୬୦।
ଉତ୍କଳ ନୀଳଚକ୍ରେ ନେତ୍ର । ଦେଉଳ ଦେଖିଲେ ସତ୍ୱର ॥
ଆନନ୍ଦେ ଉନ୍ମତ୍ତ ହୋଇ । ପାଦ ପାଦକେ ପ୍ରଣମଇଁ ॥

ସୁକ୍ଷସମୁଦ୍ରମଧ୍ୟେ ଗ୍ରସି । ତୁଳସୀଚଉରା ପ୍ରବେଶି ।
ପ୍ରଣବ ପ୍ରଦକ୍ଷିଣ ସାର । ଚଳଲେ ବେଗ ବେଗ ତର ।
ଅଠର ନଳାପାଶେ ଯାଇଁ । କ୍ଷେତ୍ରକୁ ପ୍ରଦକ୍ଷିଣ ହୋଇ ।
ଯେଠାରୁ ଗଲେ ଶୀଘ୍ରଗତି । ଦେଖିଲେ ସ୍ୱର ଗଣପତି ।
ବଡ଼ ଦାଣ୍ଡରେ ଉପଗତ । ହୋଇଛି ଶ୍ରୀଗୁଣ୍ଡିଚା ଯାତ ।
ଦେଖିଲେ ରଥ ତାଳଧ୍ୱଜ । ତହିଁ ବଜସ୍ତୁ ସେ ଅଗ୍ରଜ ।
ତାହାଙ୍କୁ କଲେ ଦରଶନ । ପ୍ରଣାମ ଆଦ ପ୍ରଦକ୍ଷିଣ ।
ରଥ ଦଉଡ଼ ଓଟାରିଲେ । ଶ୍ରୀ ବଳଭଦ୍ର ଚଳେ ଚଳେ ।
ପୁଣି ଦେଖିଲେ ନନ୍ଦିଘୋଷ । ଯେ ରଥେ ହୋ ରୂପ ପ୍ରକାଶ ।
ଅମଳ କମଳ ଲୋଚନ । ଦୂରରୁ କଲେ ଦରଶନ ।
କାନ୍ତି କାଦମ୍ବିନୀ ଜଳ ନ ସେ । ମୁଣ ଯୋଡ଼ିଲା କାବ ଗ୍ରାସେ ।
ନ ନୀଳ ନବଘନ ମଧ୍ୟେ । ଅରୁଣ ବର୍ଣ୍ଣ ରନ୍ଧ୍ର ଭେଦେ ।
ଶ୍ରୀହସ୍ତେ ଶଙ୍ଖ ଚକ୍ର ଧର । ଚୌବର୍ଗ ଦାତ ଅଶ୍ୱକାଶ ।
ଏମନ୍ତ ରୂପ ହେର ଦେଖି । ସନ୍ତୋଷ ହଲେ ଅମ୍ବା ଅକ୍ଷି ।
ପୁଣି ଦେବଙ୍କ ରଥେ ଯାଇ । ଅଚଢ଼ ଚକ୍ଷୁଁ କ ସରଇ ।
ସୁଭଦ୍ରା ପୁଣି ସୁଦର୍ଶନ । ଦୁହିଁଙ୍କି କଲେ ଦରଶନ ।
ଶ୍ରୀଗଜପତି ହୋ ଛାଡ଼ଣେ । ଏ ଆଦ ଚତୁର୍ଦ୍ଦଶ ଜନେ ।
ସହଳ ନର ନାରୀବୃନ୍ଦ । ବିବଧ ଅନନ୍ଦ ବନୋଦ ।
ବ୍ରାହ୍ମଣ ଆଦ ଚତୁର୍ବର୍ଣ୍ଣ । କରୁ ଅଛନ୍ତି ଦରଶନ ।
କୀର୍ତ୍ତନ ଗୋଷ୍ଠୀ ରଥ ଆଗେ । ଯେ ଯଉଛନ୍ତି ଅନୁରାଗେ ।
ଆଲଟ ପିନ୍ଧି ସୁସ୍ୱର । ଶଙ୍ଖଲ୍ଲ ମୃଜ ସୁର ଭର ।
ସଙ୍ଗୀତ ନୃତ୍ୟ ବାଦ୍ୟ ଗୀତ । ସର୍ବେ ଅନନ୍ଦେ ଉନ୍ମତ୍ତ ।
ହୋଇ ଶ୍ରୀ ଗୁଣ୍ଡିଚା ଉତ୍ସବ । ମହିମା କେ କହି ପାରବ ।

ଦୃଶ୍ୟହିଁ ବସୁଦେବ ଦେଖି । ଜନ୍ମ ଜୀବନ ଧନ୍ୟ ଲେଖି ॥
ମହାପ୍ରସାଦ ଗନ୍ଧାମୃତ । ଯେ ନାନା ବିଧି ଭୋଗ ଯୋଗ ॥
ଅନନ୍ତ ପୂର୍ଣ୍ଣେ ସେବା କର । ତୋ ରଥ ଦ୍ୱାରେ ପହୁଞ୍ଚ ॥
ପ୍ରଭୁଙ୍କୁ ମିଳଲେ ବ୍ରାହ୍ମଣ । ସେ ବିଧି ତୀର୍ଥେ କର ସ୍ନାନ ॥
ବସ୍ତ୍ରାନ୍ନ ରୂପେ ଦାନ ଦେଇ । ବଚନ କହିଲେ ବିନୟ ॥
ବ୍ରାହ୍ମଣେ ଆଶୀର୍ବାଦ କଲେ । ଯେ ଯାହଁ ସବୁ ଚଳାଇଲେ ॥
ଯେ ଅଷ୍ଟଶମ୍ଭୁ ଶକ୍ତି ପୁଣ । ତାହାଙ୍କୁ କଲେ ଦରଶନ ॥
ସବୁ କହିଲେ ବିପ୍ରଗଣେ । ଯେ ମହାତମ ଯେଉଁ ।ଦେ ॥
ଯଜ୍ଞ ବେଦୀରେ ତୋତେ ଦେଖି । ପୁଣି ଶ୍ରୀ ନୀଳାଚଳେ ରଖି ॥
ସମୁଦ୍ର ତଟେ ଲୁଟି କଲେ । ତୁଳସୀ ଚଉରା ସ୍ଥାପିଲେ ॥
ସାର ପ୍ରଭୁଙ୍କୁ ନିତ୍ୟାମାନ । କରନ୍ତି ସମୁଦ୍ରରେ ସ୍ନାନ ॥
ଯେ ଲକ୍ଷ୍ମୀମନ୍ତ୍ର ତା ସୁମର । ତୁଳସୀ ଜଳ ସେବା କର ॥
ଗଳା ତୁଳସୀ ମାଳା ଶୋଭେ । ନିବର୍ତ୍ତି କାମ କ୍ରୋଧ ମୋହେ ॥
ଦଣ୍ଡା କମଣ୍ଡଳୁ ଜପମାଳ । କରନ୍ତି ତୋ ରୂପ ଦର୍ଶନ ॥
ପ୍ରଣାମ ପ୍ରଦକ୍ଷିଣ ସାର । ମହାପ୍ରସାଦ ସେବା କର ॥
ପଞ୍ଚାବତାର ଭଜ ଧୂପ । ସପ୍ରେମେ ଦେଖନ୍ତି ତୋ ରୂପ ॥
କଳ୍ପ-ବଟମୂଳେ ବସି । ବୈଷ୍ଣବ ଗୋଷ୍ଠୀ ମଧ୍ୟେ ମିଶି ॥
ତୋ ନାମ ଶ୍ରବଣ କୀର୍ତ୍ତନ । ପୁଲକ ପ୍ରବନ୍ଧ ଲୋଚନ ॥
କରନ୍ତି ଏକାଦଶୀ ବ୍ରତ । ନିର୍ଜଳ ଯାମିନୀ ଜାଗର ॥
ମହାପ୍ରସାଦ ଅବଜ୍ଞାରେ । ଖାଇଲେ ଏକାଦଶୀ ବ୍ରତେ ॥
ଅଚ୍ଛ ଆଦରେ ଉଠି ଯାଇ । କରିବା ମାଧବ ସେବନ ॥
ଯେମନ୍ତେ କର୍ଣ୍ଣେ ମିଳାଇବ । ଗର୍ଭରୁ ପ୍ରବେଶ ନୋହିବ ॥
ଏରୂପେ କର ଯେତେ ବାସ । ରହିଲେ ଭକ୍ତ ଚତୁର୍ମାସ ॥

କୁସୁମ ଆସନେ ବସାଇ । ଉତ୍ସବ କରନ୍ତି ନ ସହଇ ॥
ଅତି ଆନନ୍ଦେ କୁତୁକରେ । ପାଦ ଧୋଇଲେ ଚନ୍ଦନୀରେ ॥
ଅଧର ନେତ୍ରେ ଶିରେ ଦେଲେ । ଶ୍ରୀଧର ସର୍ବାଙ୍ଗେ ସିଞ୍ଚିଲେ ॥
ମଲ୍ଲିକା ଯାଇ ପୁଷ୍ପଯୁତ । ସେ ଜଳ ତୈଳ ସୁବାସିତ ॥
ସେବକ ନାପିତ ଲଗାଇ । ମର୍ଦ୍ଦନ ଶ୍ରେଷ୍ଠ କରାଇ ॥
ସ୍ନାନେ ବଢାଇ ତର୍ପଣ । ମନ୍ତ୍ର ସ୍ମରଣ ଦେବାର୍ଚ୍ଚନ ॥
ଶୀତଳ ଦ୍ରବଧାର ଦେଇ । ଅମୃତ ଭୋଜନ କରାଇ ॥
ଆଚମନକୁ ଜଳ ଦେଲେ । କଠାଉ ସମ୍ମୁଖେ ଥୋଇଲେ ॥
ଦନ୍ତ ଖଡ଼ିକା ଓଦାବାସ । ବେଗେ ଖଞ୍ଜିଲେ ଦାସୀ ଦାସ ॥
ନୂଆବାସକୁ ଦେଲେ ସୁଖ । ଦିବ୍ୟ ପଉଣୀ ପିନ୍ଧା ନୂଆ ॥
ମଉଷ ସଙ୍ଗେ ଧୀରେ ଧୀରେ । ଉଠିଲେ ଦକ୍ଷିଣ ଦିଗରେ ॥
ଦେଖିଲେ ଭଷ ମନୋହର । କୁସୁମ କଳିକା ଶ୍ରମେର ॥
ବହଇ ଦକ୍ଷିଣ ପବନ । ଛାଡିଲେ ଜଳଯନ୍ତ୍ରମାନ ॥
କାକ ଭାସ୍କର ଶୁକ ଶାରୀ । ଖଞ୍ଜିର ଦୋଳନ୍ତି ପିଞ୍ଜରୀ ॥
ଦନ୍ତପଲ୍ୟଙ୍କ ତୂଳୀ ଶେଯେ । ମିଷ୍ଟକୁ କରାଇଲେ ବଳେ ॥
ସର୍ବାଙ୍ଗେ ଲେପିଲେ ଚନ୍ଦନ । ସୁବାସ ପୁଷ୍ପମାଳାମାନ ॥
ପଢଷ ପ୍ରେମ ଚନ୍ଦ୍ରେ ସେଜ । ପଟେ ଖଞ୍ଜିଲେ ଚନ୍ଦ୍ରମଣୀ ॥
ପାଦ ଶ୍ରୀପଦ୍ମେ ଚନ୍ଦନରେ । ଅତି ବିଷାଦ ପ୍ରେମଯୁକ୍ତେ ॥
ତାମ୍ବୂଳ ଖଣ୍ଡିଦ୍ୟନ୍ତି ଜନ । ମିଷ୍ଟ ହସନ୍ତି ମନ୍ଦ ମନ୍ଦ । ୨୫୦ ।
ଶ୍ରୀ ଜୟଦେବ କବିକୃତ । ଗାୟନୀ ଗାଇଲେ ବସନ୍ତ ॥
ବୀଣା ମୃଦଙ୍ଗ ତାଳନାଦେ । ନାଟଣୀ ନାଚନ୍ତି ଆନନ୍ଦେ ॥
ଏରୂପେ ସଜମାନ ନର । ତା ପଛେ ବାଇବା ପଦ୍ମର ॥
ସେ ମିଷ୍ଟ ନେଉଁ ଗର୍ଭେ ଗଲ । ନେଉଁ ଦେବତା ଆସିଥିଲ ॥

କ ବଲ ପାଇଲ ହେ ମିଶ୍ର । ଶୁଣିମା କହ ହେ ବୃତ୍ତାନ୍ତ ।
ମନର ଏ ବଚନ ଶୁଣି । କହନ୍ତି ବସୁଦେବ ପୁଣି ।
ଅନେକ ତୀର୍ଥ ଯାତ୍ରା କଲୁଁ । ଶ୍ରୀ ପୁରୁଷୋତ୍ତମେ ଯେ ଥିଲୁଁ ।
ଯେ ଶୁଦ୍ଧ ଦକ୍ଷିଣ ପ୍ରଦେଶ । ରହିଲୁଁ ଏକଚତୁର୍ମାସ ।
ବୈଷ୍ଣବ ଗୋଷ୍ଠିମଧ୍ୟେ ଥିଲୁ । ତାଙ୍କ ବିଧାନ ଆଚରିଲୁଁ ।
ଦର୍ଶନ ଶ୍ରବଣ କୀର୍ତ୍ତନ । ଗୋବିନ୍ଦ ନାମ ରୂପ ଗୁଣ । ୨୦୭
ସାଧୁଙ୍କ ସେବା ନିଜ ଧର୍ମ । ଯେତେକ ଶକ୍ତି ଅନୁପମ ।
ଚୌବିଂଶ ଏକାଦଶୀ ବ୍ରତ । କଲୁଁ ଯାମିନୀ ଜାଗ୍ରତ ।
ଏମନ୍ତେ ଶୁଣ ଏକଦିନ । ପ୍ରସନ୍ନ ହେଲେ ଭଗବାନ ।
ଉତ୍ଥାନ ଏକାଦଶୀନିଶି । ଦୀପ ଦର୍ଶନ କରୁ ଅସି ।
ତୁଳସୀ ଚତ୍ୱର ତଳେ । ବସିଛୁ କୃଷ୍ଣଜନ ସ୍ଥଳେ ।
ତୁଳସୀ ଜପମାଳା ଧରି । ଜପୁଛୁ ନାମ ସଂଖ୍ୟା କରି ।
ଗୋବିନ୍ଦ ଗରୁଡ଼ବାହନ । ପ୍ରତ୍ୟକ୍ଷେ ଦେଲେ ଦରଶନ ।
ଚାରି ଆୟୁଧ ଚାରିକରେ । କୋଟି କନ୍ଦର୍ପ ରୂପ ଧରେ ।
ମୁକୁଟ କୁଣ୍ଡଳ ଶୋଭନ । ଅମ୍ବୁଜ ଅରୁଣଲୋଚନ ।
ଶ୍ରୀମୁଖ ପ୍ରସନ୍ନ ପ୍ରକାଶ । ଭଙ୍ଗୀ ଅଧରେ ମନ୍ଦହାସ ।
କୌସ୍ତୁଭ ମଣି ବନମାଳ । ଶ୍ରୀବତ୍ସ ଚିହ୍ନ ବକ୍ଷସ୍ଥଳ ।
ପୀତ ବସନ ପରିଧାନ । ଶ୍ରୀଅଙ୍ଗ ଶ୍ୟାମ ନବଘନ ।
କଙ୍କଣ କିଙ୍କିଣୀ ନୂପୁର । ମୁଦ୍ରିକା ଆଦି ଅଳଙ୍କାର ।
ଶ୍ରୀ ଦେବ ଦେବ ସର୍ବେଶ୍ୱର । ବୈକୁଣ୍ଠ ତେଜ ମୋ ଅସର ।
ବାମ ଜାନୁରେ କମଳିନୀ ଅଶେଷ ଐଶ୍ୱର୍ଯ୍ୟଦାୟିନୀ ।
ବସନ ଭୂଷଣ ଶୋଭିତ । ଯେ ରୂପେ ଯେ ପାଦ ଶୋଭିତ ।
ମୋତେ ବୋଇଲେ ଚକ୍ରଧର । ହେ ମହାତ୍ମା ମାଗ ବର ।

ତୁମ୍ଭଙ୍କୁ ହୋଇଲୁ ପ୍ରସନ୍ନ । ଯେ ବାଞ୍ଛା କର ମାଗି ନେଅ ॥
ବ୍ରହ୍ମାଦି ଇନ୍ଦ୍ର ଚନ୍ଦ୍ର ପଦ । ଅଥବା କୁବେର ସମ୍ପଦ ॥
ପାତାଳ ଭୋଗ ଥିଲେ ଇଚ୍ଛା । ମାଗ ଯେ ତୋର ମନୋବାଞ୍ଛା ।
ଏକାଙ୍ଗ ଚକ୍ରବର୍ତ୍ତୀରୂପେ । ଭୁଞ୍ଜଇ ତୁଅ ସପ୍ତଦ୍ୱୀପେ ॥
କେଉଁ ହେଲେ ତୁଅ ତୁ ମୁକତ । ନଅ ତୁ ବୈକୁଣ୍ଠ ସମ୍ପତ୍ତି ॥
ଏମାନ ତୁଚ୍ଛ ପ୍ରାପ୍ତ ଦଶ । ମୋ ମନ କୃଷ୍ଣ ରସେ ରସି ॥
ବୋଇଲ ଶୁଣ ଚଉବାହା । ବର ମାଗିବି ଏବେ ଯାହା ॥
ସତେବେଁ ଦେବ ଛବ ମନେ । ମୋ ମନ ନ ଯାଉ ପରରେ ॥
ଶୁଣି ବୋଇଲେ ନାରାୟଣ । ଦେଲୁଁ ହେ ସତ୍ୟ ଏ ବଚନ ॥
ନିର୍ଭୟ ହୋଇ ମାଗ ବର । କହୁଛି ସଂଶୟ ନ କର ॥
ଏ ଆଜ୍ଞା ଶୁଣି ପାଦେ ପଡ଼ି । ପୁଣି ଉଠିଲ କର ଯୋଡ଼ି ॥
ବୋଇଲ ଗଦ୍‌ଗଦ ବଚନେ । କୋପ ନ କରବଟି ମନେଁ ।
ତୁ ଯେଣୁ କରୁଣାସାଗର । ଏଣୁ ଏ ଭରସା ମୋହର ॥
ଭକ୍ତବତ୍ସଳ ବାନା ଶୁଣି । ଏ ମନୋରଥ ମନେ ଗୁଣି ॥
ହେ ନାଥ ତୁମ୍ଭ ପଞ୍ଚାନ୍ତର । ମାଗୁଛି ମୁଁ ହୁଅ କୁମର ॥
ଅନନ୍ତ ରୂପ ଦେଖୁଥିବ । ହୋଇଲେ ଯେଜଣ ତୁମ୍ଭ ଦେହ ॥
ସଙ୍ଗରେ ଖେଳାଇ ଖେଳିବ । ମଧୁର ଭାଷା ଶୁଣୁଥିବ ॥
ଏ ବର ଦିଅ ଭଗବାନ । ମୋତେ ପ୍ରସନ୍ନ ଯେବେ ମନ ॥
ସନ୍ତୋଷ ହେଲେ ନାରାୟଣ । ଏ ବର ଦେଲୁଁ ହୋ ପ୍ରମାଣ ॥
ଆମ୍ଭଙ୍କୁ ଆମ୍ଭେ ପଞ୍ଚାନ୍ତର । ଅମ୍ଭେ ହୋଇବୁଁ ହୋ କୁମର ॥
ଦ୍ୱାପରଯୁଗ ହେବ ଶେଷ । ଅମ୍ଭେ ହୋଇବୁଁ ତୋର ଶିଷ୍ୟ ।
ଏ ବର ଦେଇ ପୀତବାସ, । ଲକ୍ଷ୍ମୀଙ୍କି ଚାହିଁ ହସ ହସ ॥
ଲକ୍ଷ୍ମୀଙ୍କି ହର୍ଷଣ ବୋଇଲେ । ମୋତେ ଅନାଇଁ ଲଜ୍ଜା କଲେ ॥

ମୁଁ ପୁଣି ପଡିଲି ଚରଣେ । ସେ ବନ୍ଦ ଗଲେ ଅନ୍ତର୍ଦ୍ଧାନେ ।
ତତ୍କ୍ଷଣେ ରୂପ ଗୋପ୍ୟ କଲେ । ଦର୍ପଣ ଯେସନେ ଲେଉଟିଲେ ॥
ଅଦୃଶ୍ୟ ହେଲେ ବାଦ୍ୟମାନେ । ପ୍ରଭାତ ନକ୍ଷତ୍ର ଯେସନେ ।
ତପ କଷଣେ ମୋର ଦେହ । ଅଦ୍ଧହିଁ କ୍ଷୀଣ ଥିଲା ହୋଇ ।
ତତ୍କ୍ଷଣେ ସ୍ଵନର ବଢିଲା । ଉତ୍ସାହ ଚିତ୍ତ ପ୍ରକାଶିଲା ।
ମିଶ୍ରଙ୍କୁ ବୃତ୍ତାନ୍ତ କହିଲେ । ମାଳା ମହାପ୍ରସାଦ ଦେଲେ ।
ବାସୁଦେବର ବାକ୍ୟ ଶୁଣି । ଗଦ୍ଗଦ କନ୍ଦ ନନ୍ଦସୁଣୀ ।
ହେ ମିଶ୍ର ତୁମ୍ଭ ଭାଗ୍ୟ ପ୍ରାପ୍ତେ । ସ୍ଵର୍ଗେ ମୋହିବେ ଦେବତାଏ ।
ଯା ପାଦପଦ୍ମ ଯୋଗୀଜନେ । ଚିନ୍ତା କରନ୍ତି ଯୋଗଧ୍ୟାନେ ।
ସେ ପ୍ରଭୁ ହେଲେ ପୁତ୍ର ତୋର । ଏ ଭାଗ୍ୟ ନାହିଁ ବ୍ରହ୍ମାଙ୍କର ।୩୯
ଏ ଯୋଗ ଶଙ୍କରଙ୍କୁ ନାହିଁ । ଆମ୍ଭେ ପାଇବୁଁ ଅବା କାହିଁ ।
ଭାଗ୍ୟେ ତୋ ମିଶ୍ର ହୋଇଥିଲୁଁ । ଏ କଥା ଶ୍ରବଣେ ଶୁଣିଲୁଁ ।
ଏମନ୍ତ ବୋଲି ପ୍ରେମଲୋକେ । ପଡିଲେ ମିଶ୍ର ପାଦତଳେ ।
ମିଶ୍ରହିଁ ଧରି ତାଙ୍କ ପାଦ । ତୁହେଁ ଆନନ୍ଦେ ଗଦଗଦ ।
ଜନଙ୍କୁ କହେ ବାସୁଦେବ । ଯେ ପୂର୍ବ ଅଶ୍ରମ ପ୍ରସ୍ତାବ ।
ଆମ୍ଭେ ଯେ ସଙ୍ଗୀ ବାଦ୍ୟମାନେ । ଶୁଣିଛୁଁ ପୁରାଣ କରନେ ।
ପୂର୍ବେ ଯେ ଯାର ଚିହ୍ନ ଥାଇ । ଜନ୍ମ ଜନ୍ମାନ୍ତେ ଚିହ୍ନ ହୋଇ ।
ସେ କର୍ମେ ତୁମ୍ଭେ ଆମ୍ଭେ ମିଶ୍ର । ହୋଇବା ଧର୍ମ ଯେବେ ସତ ।
କୃଷ୍ଣ ହୋଇବେ ମୋ ତୁମର । ବେଦ୍ରକେ ହେବେ କି ତୁମ୍ଭର ।
ଏ ସେ ମୋହର ସତ୍ୟବାଣୀ । ତୋ ଘରେ ଥିବେ ପ୍ରଭୁ ଜେମ ।
ତୁମ୍ଭର ଶ୍ରଦ୍ଧା ପୂର୍ଣ୍ଣ କର । ପୁଣି ଅଟିବେ ମୋର ପୁତ୍ର ।
ଏ କଥା ଦନ ଦନସୁଣୀ । ଅତି ଆନନ୍ଦ ହେଲେ ଶୁଣି ।
ସ୍ଵପ୍ନେହେଁ ଏବେ ଭାଗ୍ୟ ହେବ । ଏ ଅକ୍ଷି ସେରୂପ ଦେଖିବ ।

ଅଚେତ ଧନ୍‍ଵ ରହି ଅଛି । ନିନ୍ଦକୁ ଦେଲେ ସେ ମେଲଛି ।
ଭୁହ ସେ ବାକ୍ୟ ଅନୁସାରେ । ବଳସ୍ତ ବଲୁ ବନସରେ ।
ଭକ୍ତ ବଚନ ପ୍ରତିପାଳ । ଗୋଷ୍ଠ ଉତ୍ସବ ବନମାଳୀ ।
ଅମ୍ଭେ ସେ ପରବାସୀ ହୋଇ । ତୁ ପ୍ରଭୁ କରୁଣାସାଗର ।
ଦେଖାଅ ଅନନ୍ତ ସ୍ୱରୂପ । ଲାବଣ୍ୟ ମୋହନସରୂପ ।
ସମ୍ପୂର୍ଣ୍ଣ ପ୍ରେମେ ପଡ଼ି ମନ । ଯାଉଥାଉ ତପ ତେଜ ଜ୍ଞାନ ।
ସ୍ତୁତି ହୋଇଲେ ଯଥାମତି । ଅଲୁଲେ କୃଷ୍ଣଙ୍କୁ ଗୋପୀଜନ୍ତ ।[illegible]
କାନ୍ଦନ୍ତି ପ୍ରଳାପ କରନ୍ତେ । ବରହ ବ୍ୟାକୁଳ ଚିତ୍ତେ ।
ଯାଉ ସେ କହାଉଛୁ ଧନ । ଦେ ଅସ୍ଥ କରବ ତା ମନ ।
ଚମନ ଉଦର ଉଦାସୀ । ହାସ ଘେନନ ମିଶାମିଶି ।
ଉନ୍ମତ୍ତ ମୂର୍ଚ୍ଛିତ ବଚନ । କ୍ଷଣକ୍ଷଣକେ ଅନୁମାନ ।
ବରହ ବ୍ୟାଧି ଏ ପ୍ରକାର । ଏଥକୁ ବୈଦ୍ୟ ବେଣୁଧର ।
ଏରୂପେ ମୁନିକନ୍ୟାଗଣ । ଯେ କହୁ କଲେ ଉଚ୍ଚାରଣ ।
ଜ୍ଞାନ ବୋଲନ୍ତି ମନ ଶୁଣ । ମୁନି ଶାମୁଙ୍କ ସେ ଗଜନ ।
ଶୁଣିଲେ ଋଷିକନ୍ୟା ବାଣୀ । ତୁ ଏବେ ମୋର ଚନ୍ଦ୍ର ଶୁଣି ।
ଏ ଭବେ ରସିଲେ ହୋ ତତ୍ତ୍ୱ । ଗୋବନ ହୋଇବେ ପ୍ରାପତ ।
ସୁତନ ଭୂପତି ପବିତ୍ର । ରଚିଲେ ପ୍ରେମପଞ୍ଚାମୃତ ।୩୮।
ସୁଜନେ ଏଣେ କର ଲକ୍ଷ୍ୟ । ହେବ ନିର୍ମଳ ଜ୍ଞାନୋଦୟ ।
ପ୍ରେମ ପ୍ରସାଦ ପ୍ରକାଶିବ । ସଂଶୟତମ ନାଶ ଯିବ ।

ଇତି ଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତି ଭେଦ ଗ୍ରନ୍ଥବରେ ମନଜ୍ଞାନ ସୁତ ପରୀକ୍ଷିତ ସମ୍ବାଦେ ମୁନିକନ୍ୟା ବଚନ ନିର୍ଣ୍ଣୟେ ନାମ ସପ୍ତମୋ-ଽଧ୍ୟାୟଃ ।

———

## ଅଷ୍ଟମ ଅଧ୍ୟାୟ ।

ଶ୍ରୀତ ବୋଲନ୍ତି ମନ ଶୁଣ । ଯେ ନିଜ ବ୍ରଜଦବ୍ୟାଗଣ ।
ତାଙ୍କ ବଚନ ତାଙ୍କ ସ୍ତବ । କହନ୍ତି ମୁନି ଶୁକଦେବ ।
ଶୁଣରେ ଶୁଣ ନୃପଗଣ । ଗୋପୀଙ୍କ ବଚନ ବଧାନ ।
କୃଷ୍ଣଙ୍କୁ ନନ୍ଦସୁତ ବୋଲି । ଜାଣନ୍ତି ସକଳ ଗୁଆଲି ।
ଅମୃତ ଅଟଇ ସ୍ଵଭାବ । କହନ୍ତି ସ୍ଵପର ଧୀରଭ ।
ଜାରପୁରୁଷ ପ୍ରେମଭରେ । କଟି ଦବସ ଅନ୍ତରରେ ।
ଯଣୀ ରମଣୀ ପ୍ରାପ୍ତ କଲ । ସ୍ଵପନେ ଥାନ୍ତି ସେ ଅବୋଧ ।
ଜସେଲେ କରନ୍ତି ପ୍ରକାଶ । ନାନା ରହସ୍ୟ ରଙ୍ଗ ରସ ।
ଦାସ ମୁଁ ଦାସ ସ୍ନେହ ମୋହ । ଥାଉ ନ ଥାଉ ନିଜ ଦେହ ।
କୃଷ୍ଣର ଦେବେ ମନ ପ୍ରାଣ । ଜଳ ଭିତରେ ଯେସନେ ମୀନ ।
ଜଳରୁ ଭିନ୍ନ କଲେ କାୟ । ଜୀବନ ଥାଉଁ ମଲ୍ୟପ୍ରାୟ ।
ଧୀରଭ ଅଛନ୍ତି ଅଭେଦ । ଦକ୍ଷ ଅନନ୍ତ ବନୋଦ ।
ସକଳ ବାଞ୍ଛା ପୂରକ.ନୀ । ରାଧାଙ୍କୁ କହାଉ ଗୋପିନୀ ।
ସେ ରୂପ ନ ଦେଖି ନୟନେ । ଏଥୁଁ କି ଦୁଃଖ ଜୀବନେ ।
ସେ ସବୁ ଦୁଃଖ ଅପା ଗତ । ଷୋଡଶମନ୍ତ୍ର ମଧ୍ୟେ ଭୂତ ।
ଚଳେ ନ ଯାଉ ବେଣୁଧର । ଗୋପୀ ଏ କରନ୍ତି ବିଚାର ।
ଲଣା ସ୍ଵଗିଅ ନନ୍ଦସୁତ । ଆପଦୁ ବାଞ୍ଛୁ ବନ୍ଧୁର ।
ଏବେ ଏ ବନରେ ହଜିଲା । କିବା ଅସୁର ହରନେଲା ।
କଅବା ଦୁଷ୍ଟଲେ ଭୂରେ । ଦେଖିକି ଗଲା ଅଟମ୍ବେରେ ।
ଏମନ୍ତ ବୋଲି ଶୋକ କରି । ମଙ୍ଗଳାଦେବୀଙ୍କି ସ୍ମରି ।
ଏବାରେ ରକ୍ଷ ଗୋ ମଙ୍ଗଳା । କୃଷ୍ଣ ଯେ ବନରେ ହଜିଲ ।
ଆଜି ମଙ୍ଗଳବାର ବ୍ରତ । ଏବେହେଁ କରେ ବନବାସ ।

ଯଶୋଦାପୁତ୍ର ଏହୁ ଏକା । ଏବାରେ ରଖ ଗୋ ଅମ୍ବିକା ॥
ଷୋଡଶ ପୂଜା ଅମ୍ଭେ ଦେବୁଁ । ମନ୍ଦାର ମାଳ ଚଢ଼ାଇବୁଁ ॥
ରଙ୍ଗ ସିନ୍ଦୂର ରଙ୍ଗ ଚୂଡ଼ୀ । ଦେବୁଁ ଗୋ ରଙ୍ଗ ପାଟଶାଢ଼ୀ ॥
କନକମଣିକ ଆଗ କରି । ଶେଷ ଲ ସହସ୍ର ଗୋପନାରୀ ॥
ତୋର ମନ୍ଦିର ମଧ୍ୟେ ଯାଇଁ  ପୂଜିବୁଁ ନୃତ୍ୟ ଗୀତ ଗାଇ ॥
ଅନେକ ଦେବୁଁ ଗୋ ଗୋରସ । ସମ୍ପୂର୍ଣ୍ଣେ କରିବୁଁ ସନ୍ତୋଷ ॥
ତୋର ଉତ୍ସବ କରାଇବୁଁ । ଯେବେ ଗୋ କୃଷ୍ଣଙ୍କୁ ପାଇବୁଁ ॥
ଏବାରେ ଭେଟାଅ କରାଇ । ତୋ ବିନୁ ଅନ୍ୟ ସାହା ନାହିଁ ॥
କେ ବୋଲେ ଗୋପେ ଧାଇଁଯିବା । ଶ୍ରୀ ବଳଭଦ୍ରଙ୍କୁ ଆଣିବା ॥
ଶ୍ରୀଦାମ ସୁଦାମ ସୁବଳ । ଅବର ଯେତେକ ଗୋପବାଳ ॥
ସର୍ବେ ପଶିବା ବନେ ଯେଇ । ବସ୍ତ୍ରରେ ଥିବା ଧୂଳା ଜାଳ ॥
ଆଗେ କୃଷ୍ଣଙ୍କୁ ଖୋଜିଯିବା । ପଛେ ଗୋ ନନ୍ଦଙ୍କୁ କହିବା ॥
କୃଷ୍ଣ ହଜିବା କଥା ଶୁଣି । ମୂର୍ଚ୍ଛିରେ ପଡ଼ିବେ ଧରଣୀ ॥
ଯଶୋଦା ଏଥକୁ ଶୁଣିବେ । ହା କୃଷ୍ଣ ବୋଲି ପ୍ରାଣ ଦେବେ ॥
ଯଶୋଦା କହିଲେ କୃଷ୍ଣ ଦେଇ । ପଛେ ଗୋ କହିବା ବୁଝାଇ ॥
କେ ବୋଲେ ଉଠିଲ ଲୁଚିଥିବ । ଡକାଇ ଡାକିଲେ ଆସିବ ॥
ଏମନ୍ତ କହିଣ ଗୋପୀଏ । ଡକାଇ ଡାକିଲେ ଥୋକାଏ ॥
ତୁ ଆମ୍ଭ ଘରେ ପଶି ହରି । ସର ଲବଣୀ କରୁ ଚୋରି ।୬୦
ଆମ୍ଭ ସର୍ବସ୍ୱ ହରି ନେଉ । ମିଛେକେ ଅପବାଦ ଦେଉ ॥
ସେ ଦିନ କହିଅଛୁ ଯାହା । କେ ପୁଣ ସହିପାରେ ତାହା ॥
କାହାର ଉପ୍ରୋଧ ନ କଲୁ । ଅନାଇଁ ଅନାଇଁ ବୋଇଲୁ ॥
ସେଥୁ ମୋ କେ ନେଲୁ ବେଶର । ଅଖିଳ ନାଥ ଗୋ ଦେଖାଇ ॥
ଯୋଡ଼ାଇ ବେଶର ନେଉଛ । ସେଥୁର ଦଣ୍ଡଛ ପ୍ରତ୍ୟକ୍ଷ ॥

ଏରୂପେ ଚିନ୍ତେ ହଟା ହରି । ଅମ୍ବର ପୟୋଧର ଧରି ।
ତୁ ଅଧିକ ସୁଖ ନେଲୁ । ପେଣ୍ଡ୍ରୁ ସ୍ୱେରଣୀ ନାମ ଦେଲୁ ।
ଏଥୁ ଅଧିକ କର୍ମ ଯେତେ । ତାହାକୁ କହକାନ୍ତୁ କେତେ ।
ଏବେ ତୁ ଭାବ ବେଣୁସ୍ୱନେ । ସଙ୍ଗେ ଅଣିଲୁ ଗୋରବନେ ।
ଶୁଦ୍ଧ କୁଙ୍କୁମ ଛଡ଼ାଇଲୁ । ଅନାଥା କରି ନେଣେ ଚଳୁ ।
ଏତେ ନିଷ୍ଠୁର କେଉଁ ହୁଅ । କେହ୍ନେ ନ ହେଲୁ ଦୟା । ୫୯ ।
ଅମ୍ଭ ମରଣ ବାଞ୍ଛୁଛୁ । ଏଣ୍ଡପଣକୁ ଦେଖାଉଛୁ ।
ନନ୍ଦର ବୃନ୍ଦାବନ ପୁଣ । ଯଶୋଦାକ୍ଷୀର ବେଳ ନେଷ ।
ତାହାଣ ପୁତ୍ରା ନାହ ବଳା । ଦଶ ଦ୍ୱନଣ ଦେଲୁ ବଳା ।
ଏ ନେନ ଅମ୍ଭେ ଦୟାକରୁଁ । ତୋ ଦୋଷ ମନରେ ନ ଧରୁଁ ।
ତୁ ଲଜ୍ଜା କେଉଁପେ ବିସ୍ମର । ଅମ୍ଭଙ୍କୁ କଲୁ ଏବେ ପର ।
ବାଲ ପ୍ରଭାବେ ତୋ ବୃତ୍ତାନ୍ତ । କଂସକୁ କହିବୁଁ ସମସ୍ତ ।
ତୋଠ ଜେଡ଼ି ଅମ୍ଭେ ଅଟୁଁ । ନଯୋଗ ଦୁଃଖର ଘଟୁଁ ।
ଶିଖି ଫଲକିଅ ଅପଟ । ନନ୍ଦେ ସ୍ୱଜାଙ୍କ ସଙ୍ଗେ ଭେଟ ।
ଛାଡେ ପଡଣ ଜଣାଇବୁଁ । ତୋତେ ଧଗଡ଼ ସେଲୁଇବୁଁ ।
ତୋର ସଖାଙ୍କୁ ନନ୍ଦଘର । ବହୁଣ ନେବ କଂସାସୁର ।
ଏବେନ୍ଦେଁ ଯାଇ ନାହିଁ କହୁ । ଯେବେ ବେଗରେ କାର୍ଯ୍ୟ ଅଛୁ ।
ଦେଖୁଅ ମୁଖ ସୁଖସୀମା । ବଢି ଏହାଣି ଭ୍ରୂଭଙ୍ଗିମା ।
ନେ ବୋଲେ ଚାଟ୍ଟ ବଣ ନେହଲା । ଦୂରବନକୁ ଅବା ଗଲା ।
ଅସ ଡ଼ାକବା ଉଚ୍ଚସ୍ୱରେ । ଯେମନ୍ତେ ଶୁଣେ ତା କର୍ଣ୍ଣରେ ।
ଏମନ୍ତେ ଯୋହାଏ ହରିର । ନାମ ଡାକନ୍ତେ ଉଚ୍ଚ କର ।
ହେ କୃଷ୍ଣ ନନ୍ଦନନ୍ଦନଅ । ମଧୁରଚନ୍ଦ୍ରିକା-ରୂପଅ ।
କୃଷ୍ଣମାନଅ କୁଞ୍ଜବନ । ନଟବରଅ ନବଘନ ।

ଯଶୋଦାସୁତ ନନ୍ଦବାଳ । ହେ ଗୋପୀପ୍ରାଣ-ମୀନ ଜଳ ॥
ହେ ବ୍ରଜବୀର ବେଣୁଧର । ବନମାଳ ଓ ପୀତାମ୍ବର ॥
ପୂତନାସ୍ତନପ୍ରାଣପିଅ । ଶେଷେ ଲୋଚନଦାନଦିଅ ॥
ଷଣ୍ଢା ଶକଟା ଭେଦିହାଲ । ମଦନମୋହନ ଗୋପାଳ ॥
ସ୍ୱୟଂରସିଅ ଭୟଗଞ୍ଜ । ବୃନ୍ଦାବନଅ ବ୍ରଜବାସି ॥
ବକା ବତ୍ସ ଅଘାଅର । ହେ ବନ ଅନଳଅହାସ୍ୱ ॥
ଶୈଳବନ୍ଧନ ବସ୍ତ୍ରାହରଣା । ସୁଦାମ ସୁବଳର ସଖା ॥
ସମଅନୁଜ ଲଙ୍ଗାଧର । ହେ ଶ୍ୟାମସୁନ୍ଦର କିଶୋର ॥
ନାବବାହନ ଦଧିଦାନୀ । ବ୍ରଜବାଳନଚୂଡ଼ାମଣି ॥
ବାଡ଼ ବୁଲାଣ ନଦ୍ୟାଗୁରୁ । ବରଜବଧୂ ବାଞ୍ଛାତରୁ ॥
ନଗାକୂଳଅ ନବରଙ୍ଗୀ । ହେ ତରୁମୂଳଅ ତ୍ରିଭଙ୍ଗୀ ॥
ବଂଶୀ ବନୋଦ ଗୀତ ଜଡ଼ । ଦେଖାଉ କଳା ତୋର ଛବ ।
ହେ ମଣିଚୂଡ଼ା ମୋକ୍ଷଦାନ । ଦୃଢଲ୍ଲାନନ କଞ୍ଜ ଅଣି ॥
ତୋଷିଲ ଯଶୋଦାର ମନ । ଯାମଳାର୍ଜ୍ଜୁନଭଞ୍ଜନ ॥
ଅମ୍ଭ ଅବଳ୍କ ଏବେ ଶୁଣ । ଅମ୍ଭେ ଯେ ତୋହର ଶରଣ ॥
ବ୍ରହ୍ମାଣ୍ଡପେଟ୍ଟା ମାଟିଖିଅ । ବରଜରମଣୀରସିଅ ॥
ହେ କାଳୀଭୁଜଙ୍ଗମର୍ଦ୍ଦନ । ହେ ତୃଣାବର୍ତ୍ତ ବନାଶନ ॥
ହେ ଇନ୍ଦ୍ରଜତ ଗିରଧର । ଅହେ ପାଲଟା ବସ୍ତ୍ରେଶ୍ୱର ॥
ହଣ୍ଡକୁଣ୍ଡିର ଶୋହରରେ । ବଚନ ଶୁଦ୍ଧ ନ ଉଚ୍ଚାରେ ॥
ଗୋପାଳପାଳ ଲୋପ ହୋଇ । ଗୋବଦନ ଛନ୍ଦନ ଶୁଭଇ ॥
କୁଞ୍ଜରେ କୃମାଦ୍ଧା ନ ଶୁଣି । ଏ ସ୍ତବେ ଭାଷଲେ ଗୋପିନୀ ॥
ଗୋପ ସମ୍ବନ୍ଧ ନାମ ଶୁଣି । ଗୋପୀ କରନ୍ତି ଉଚ୍ଚାରଣ ।୧୦।
ଗୋପ ବାହାରେ ଯେତେ ରୂପ । ରହିଁ ନ ନାହିଁ ଭୁରୁକ୍ଷେପ ॥

ଜଗତେ ନାହିଁ ନିସ୍ତାରଣ । ଶୁଣବେ ଏଥ ପ୍ରୟୋଜନ ॥
ବ୍ରଜ ବର୍ଜିତ ଯେତେ ଧାମ । ଯମୁନା ପାର ଗୁଣଗ୍ରାମ ॥
ତହୁଁ ତ ନ ରସଇ ମନ । ସେ କୋଟେ ଶ୍ରବଣ କୀର୍ତ୍ତନ ॥
ଏ ବ୍ରଜ ଉପାସନା ଧର୍ମ । ପରମ ପୁଷ୍ଟିପ୍ରେମ ମର୍ମ ॥
ଏ ନିଜ ଗୋପାଙ୍ଗନା ଭାବ । କୃଷ୍ଣର ଏଥି ବଡ଼ ଲାଭ ॥
ଏ ଗୋପ ଛଳେ ଗିରିଧର । ଇନ୍ଦ୍ର ଗରବ କଲେ ଚୂର ॥
ଗାଈ ଗୋପୀଙ୍କ ଭାବ ଖେଳେ । ବ୍ରହ୍ମାଙ୍କ ମହତ୍ତ୍ୱ ଘାରଲେ ॥
କହିବା ସେ ପ୍ରସ୍ତାବ ଶୁଣ । କୃଷ୍ଣର ଭାବଗ୍ରାହୀ ନାମ ॥
ଗୋବିନ୍ଦ ରୂପ ଶୋଭା ଦେଖି । ଗୋପୀଏ ଅନିମିଷ ଅକ୍ଷି ॥
ନିମିଷକୁ ଶକ୍ତା ନାହିଁ । ଅଛହିଁ ମ୍ନହ କୃଷ୍ଣ ରହିଁ ॥
ଆମ୍ଭର ନାଭ ଯେ ଭ୍ରମର । ଜନବେ ପାନ ପୟୋଧର ॥
ବାଳକସ୍ନେହ ଯେ କରରୁଁ । ଛପି ବରଷ ଦେଖୁଥିରୁଁ ॥
ବୋଲେ ଯେଜଣ ଚିହ୍ନ ଦେବୁଁ । ପଲ୍ୟଙ୍କେ ସେଜ ପଡୁଉରୁଁ ॥
ଏ ବାଞ୍ଛା କଲେ ମନେ ମନେ । ଯେ ପୁଷ୍ଟବନ୍ତୀ ଗୋପୀମାନେ ॥
ଯେ ବତ୍ସାବନ୍ତୀ ଗାଈ ଗୋପେ । ତାଙ୍କ ମାନସ ଏହିରୂପେ ॥
କୃଷ୍ଣ ସୁନ୍ଦର ରୂପ ସ୍ନେହ । ଦେଖନ୍ତି ଚକ୍ଷୁ ପ୍ରାପ୍ତ ହୋଇ ॥
ନ ବତ୍ସା କବା ଜଳ ତୃଣ । ତାହିଁ ତ ନ ରୁଚଇ ମନ ॥
ବତ୍ସା ହୋଇବେ ଭଗବାନ । ଜନବେ ଆମ୍ଭ କ୍ଷୀରପାନ ॥
ବାତ୍ସଲ୍ୟ ସ୍ନେହ କରିଥିରୁଁ । ଛପି ବରଷ ଦେଖୁଥିରୁଁ ॥
ସାଈ ଗୋପାଙ୍ଗଣୀଙ୍କ ମତ । ଜାଣିଲେ ଶ୍ରୀ ନନ୍ଦନନ୍ଦନ ॥
ଏହାଙ୍କ ପୂରାଇବୁ ଆଶ । ବିଚାର କଲେ ପୀତବାସ ॥
ବ୍ରହ୍ମା ଯେ ବ୍ରହ୍ମଲୋକେ ଥିଲେ । ତାହାଙ୍କୁ ମାୟାଭ୍ରମ କଲେ ॥
ନ ଛାଡ଼ି ମନ ଛନ ଛନ । ବୋଇଲେ ଯିବା ବୃନ୍ଦାବନ ॥

କୃଷ୍ଣ ଯେ ହେଲେ ଅବତାର । ନ ଲୀଳା ଅଶେଷ ବେଭାର ॥
ନାରଦ ତାଙ୍କୁ ଦରଶନ । ସେ ବିଷ୍ଣୁ ବ୍ରହ୍ମାଣ୍ଡ ପାଳନ ॥
ଏବେ ନିଶ୍ଚୟ ବ୍ରହ୍ମା ଆସି । ଗୁପତେ ବୃନ୍ଦାବନେ ପଶି ॥
ବାଳ ଗୋପାଳ ରୂପ ଦେଖି । ଯୁଗଳ କଲେ ଅଷ୍ଟ ଆଖି ॥
ଗୋବିନ୍ଦ ସଙ୍ଗେ ଗୋପପୁର । ସମସ୍ତେ ଭୁଞ୍ଜନ୍ତି ଖୀର ॥
ଅନ୍ନ ବ୍ୟଞ୍ଜନ ପିଠା ଖିରି । ଗୋବିନ୍ଦ ଶ୍ୱଷିଲେ ସକଳ ॥୧୬୦
ଯାହାର ସ୍ୱାଦିଷ୍ଟ ଯେମନ୍ତେ । ପ୍ରଶଂସା କଲେ ଗୋପୀନାଥ ॥
ଲବଣୀ ଦଧି ଦୁଧ ଛେନା । ଯେବା ଯେମନ୍ତ ଆଣିଥିଲା ॥
ଏକା ପତରେ ସବୁ ଅନ୍ନ । ମଧ୍ୟରେ ସକଳ ବ୍ୟଞ୍ଜନ ॥
ସବୁ ଗୋରସ ଅନେ ଢାଳ । ବସିଲେ ବାଳକମଣ୍ଡଳୀ ॥
ଶ୍ରୀ ବଳଭଦ୍ର ଭଗବାନ । ସଙ୍ଗତେ କରନ୍ତି ଭୋଜନ ॥
ଜେ ପିଠା ଅଧଖଣ୍ଡେ ଖାଇ । ଅଧେକ କୃଷ୍ଣ ମୁଖେ ଦେଇ ॥
ସ୍ୱାଦୁ ବ୍ୟଞ୍ଜନ ଏହମତେ । କୃଷ୍ଣଙ୍କୁ ଦିଅନ୍ତି ଗୋପସୁତେ ॥
ଜେ ଜେଉ ବଳଭଦ୍ର ମୁଖେ । ସ୍ୱାଦୁ ବ୍ୟଞ୍ଜନ ଦିଅନ୍ତି ସୁଖେ ॥
କୃଷ୍ଣହିଁ ତାଙ୍କ ମୁଖେ ଦିଅନ୍ତି । ଏରୂପେ ଭୋଜନ କରନ୍ତି ॥
ବ୍ରହ୍ମା ଯେ ଲୁଚି ଦେଖୁଥିଲେ । ସଂଶୟ ମନେ ବିସ୍ମରଲେ ॥
ଉଚ୍ଛିଷ୍ଟ ଜ୍ଞାନ ନାହିଁ ଯାର । କିରୂପେ ଜାଣିବେ ଅସ୍ୱର ॥
ଏ ଅସ୍ୱବସ୍ଥ ତ ହୋଇଲେ । କେ ଆମ୍ଭେ ତାହା ନ ଜାଣିଲେ
ବତ୍ସା ବାଳକ ଘେନିଯିବି । ଏହାଙ୍କ ମହିମା ବୁଝିବି ॥
ନିଜ ଶକତ ଯେବେ ଥିବ । ବତ୍ସା ବାଳକ ଭିଆଇବ ॥
ତୋହଲେ ଏହାଙ୍କର ଏବେ । ସଂସାର ଜାଣିବେ ଦଇବେ ॥
ଏମନ୍ତ ବ୍ରହ୍ମା କଲେ ମନେ । ବାଛୁରି ଭଲେ ଯୋଉବନେ ॥
ଶ୍ରୀ ବଳଭଦ୍ର ତା ଦେଖିଲେ । ଗୋପ-ସୁତଙ୍କୁ ଅଜ୍ଞା ଦେଲେ ॥

ସମସ୍ତେ ବେଗେ ଧାଇ ଯାଅ । ବାଛୁରୀପଲ ଲେଉଟାଅ ॥
ଅଜ୍ଞା ପ୍ରମାଣେ ଗୋପେ ଗଲେ । ବ୍ରହ୍ମାର ମାୟା ଲେଡ଼ି ଥିଲେ ॥
ସମୂହ ବାଳକ ବାଛୁରି । ଦେଲେ ସେ କମଣ୍ଡଳେ ଭରି ॥
ବ୍ରହ୍ମାଲୋକକୁ ଗଲେ ଘେନି । କୃଷ୍ଣକୁ ଛନ୍ଦେ ଛଳପାଣି ॥
ଗୋପେ ଯେ ବତ୍ସା ଆସିଗଲେ । ଏବେବେହେଁ ଦେହ ନ ଦଶିଲେ ॥
ହୋଇଲା ଅଭିହଁ ଉହ୍ଳୁଁର । ତୁ ଦେଖୁ କନା ବେଣୁଧର ॥
ଶ୍ରୀ ବଳଭଦ୍ର ଅଗ୍ରେ ଯାଇ । ଗୋଧନ ଗଲେ ବେଗେ ଧାଇ
ତ ଦେଖି ବାଳକ ବାଛୁରି । ଜାଣିଲେ ବ୍ରହ୍ମା କଲା ଚୋରି ॥
ଗୋକୁଳ ବାଳକ ସଙ୍ଗରେ ଦେଖି ଅବଜ୍ଞା କଲା ମୋତେ ॥
ମହିମା ବୁଝିବାର ପାଇଁ । ଏହାଙ୍କୁ ନେଲା ସେ ଚୋରାଇ ॥
ସେ ବଧି ନିଶେଷେ ଭ୍ରମିବ । ସେ ମୋର ଭାବ କି ଜାଣିବ ॥
ଭାବନ୍ତି ମୋର ବଧି ଶୁଦ୍ଧ । ଅଭାବ ଅଶୁଦ୍ଧ ନିଷେଧ ॥
ଏହା ଜାଣନ୍ତି ମୋ ଭକତେ । ବ୍ରହ୍ମାର ଜ୍ଞାନ ନାହିଁ ଏତେ ॥
ଏମନ୍ତ ମନେ ବିଚାରିଲେ । ବତ୍ସା ବାଳକ ପ୍ରକାଶିଲେ ॥
ଏକୁ ଯେ ହେଉଛନ୍ତି ଅନେକ । ହୋଇ ଏ ବତ୍ସା ବାଳକ ॥
ଗାଈ ଗୋପୀଙ୍କ ଭାବେ ହରି । ବତ୍ସା ବାଳକ ରୂପ ଧରି ॥
ବେଶ ବୟସ ରୂପ ଗୁଣ । ଯାହାର ଦେଖେଁ ଯେତେ ଚିହ୍ନ ॥
ସେହି ସଦୃଶେ ଉଦାହାର । ବାଛୁରି ସେହି ଅନୁସାର ॥
ଡାଳି ଦଣ୍ଡସ୍ତି ଧଳୀ ଭଙ୍ଗୀ । ଶୃଙ୍ଗୀ ଶ୍ୟାମଳୀ ପଞ୍ଚରଙ୍ଗୀ ॥
ବତ୍ସା ବାଳକ ଯେନ ହରି । ଅଇଲେ ନୃତ୍ୟ ଗୀତ କରି ॥
ସୁନ୍ଦର ବନଫୁଲମାଳ । ସୁଗନ୍ଧି ସୁନ୍ଦର ଶୀତଳ ॥
ହଳଧରଙ୍କ ପ୍ରିୟ ଯେତେ । ଦେଲ ବେଢ଼ିଲେ ଗୋପପୁରେ ॥
ମୁରଲୀ ବେଣୁ ଶିଙ୍ଗାନାଦେ । ହରଷ ଆନନ୍ଦ ବିନୋଦେ ।୧୬।

ତମାଳ ନୀଳ ତନୁ ମେଳ । ନାଚନ୍ତି ଦେଇ କରତାଳ ।
ଚୂଳର ଚନ୍ଦ୍ରପ୍ରାନ୍ତେ ବାନ୍ଧ । ଆଗେ ଧାଆନ୍ତି ଯୋଡ଼ ଯୋଡ଼ ॥
କିଙ୍କିଣୀ ନୂପୁର ଶବଦ । ବାଳକ ଉନ୍ମାଦେ ଆନନ୍ଦ ।
ଗୁଞ୍ଜ ଗୁଞ୍ଜସ ଗୋରଚନ । ବିବିଧ ବନଫୁଲମାନ ।
ଶିଖି ଚନ୍ଦ୍ରିକା ଶୋଭେ ଚୂଳେ । ନବ ପଲ୍ଲବ ଜାନୁଡ଼ାଳେ ।
ଅଶୋକ କିଂଶୁକ କରମ । ଏଆଦି କୁସୁମ ଅସୀମ ॥
ଶୋଭିଅଛନ୍ତି ନାନା ଅଙ୍ଗେ । ଝାଳେ ଗୋଧୂଳି ଶୋଭା ଅଙ୍ଗେ ।
ପୀତ ଅରୁଣ ନୀଳ ଶ୍ୱେତ । କେ କାଛି ପିନ୍ଧିଅଛି ଦେଇ ।
ବାଳକମଣ୍ଡଳୀ ମଧ୍ୟର । କୃଷ୍ଣ ସହିତେ ହଳଧର ।
ବାହୁଡ଼ା ବନେ କରଗଲେ । ଗୋପ ନିକଟେ ପ୍ରବେଶିଲେ ।
ପଶ୍ଚିମଦିଗେ ରବି ମିଶେ । ଦିଗନ୍ତ ଅରୁଣ ଅଭ୍ୟାସେ ।୧୬୧
ପୁତ୍ରଙ୍କ ପଥ ଅନୁସର । ଗ୍ରାମ ବାହାରେ ଗୋପନାରୀ ।
ଉଦସ୍ତ ଅତି ସ୍ନେହଭରେ । କ୍ଷୀର ସ୍ରବଇ ପୟୋଧରେ ।
ପୁତ୍ରଙ୍କୁ ଦେଖି ବେଗେ ଧାଇଁ । କୋଳେ ଘେନିଲେ ଚୁମ୍ବ ଦେଇ
ଆନନ୍ଦେ ଦେଲେ ସ୍ତନ ପାନ । ପୂର୍ବଙ୍କୁଁ ସ୍ନେହ ଶତେଗୁଣ ।
ବତ୍ସାଙ୍କୁ ଦେଖି ଗାଈମାନେ । ଧାଇଁଲେ ହରଣୀ ଯେସନେ ।
ଅତିହିଁ ଉଚ୍ଚେ ରୋଳ ପୂତ । ପଦଙ୍କୁ ଲେଉଁଲେ ପ୍ରତ୍ୟକ୍ଷ ॥
ହୁଙ୍କାର ହମ୍ବାରବ କର । କ୍ଷୀର ସ୍ରବଇ ଝରଝର ॥
ଆନନ୍ଦେ କଲେ ସ୍ତନପାନ । ପୂର୍ବଙ୍କୁଁ ସ୍ନେହେ ଶତଗୁଣ ।
ତାହି ଗୋପୀଙ୍କ ସ୍ନେହଭର । ଦେଖି ଚକିତ ହଳଧର ॥
ଯୋଗ ଧ୍ୟାନରେ ମନ ଦେଲେ । ଏ ସବୁ ବୃତ୍ତାନ୍ତ ବୁଝିଲେ ॥
କୃଷ୍ଣଚରିତ ମନେ ଜାଣି । କିଛି ନ ବୋଲି ହେଲେ ତୁନି ।
ଏରୂପେ ବରଷେ ହୋଇଲା । ବତ୍ସ ବାଳକ ବ୍ରହ୍ମା ନେଲା ।

ବତ୍ସ ହରିଲେ ଏବେ ଯିବ । ନ ହରିଲେ କୃଷ୍ଣ ତା ଦେଖିବ ॥
ବତ୍ସ ହରି ବ୍ରହ୍ମା ମନେ । ପ୍ରବେଶ ହେଲେ ବୃନ୍ଦାବନେ ॥
ସେହି ବତ୍ସ ବାଳକ ଦେଖି । ଚମତ ହେଲେ ଅଷ୍ଟଆଖି ॥
ପୁଣିହିଁ ଗଲେ ବ୍ରହ୍ମଲୋକ । ଅଛନ୍ତି ସେ ବତ୍ସ ବାଳକ ॥
ପୁଣି ଦେଖିଲେ ଆସି ବନେ । ବତ୍ସ ବାଳକ ଯଦ୍ୟମାନେ ॥
ବୋଇଲେ ହରି ମନ୍ଦକର୍ମ । କୃଷ୍ଣ ପରମ ପୂର୍ଣ୍ଣ ବ୍ରହ୍ମ ॥
ନ ଜାଣି ଅପରାଧ କଲି । ମହିଁମା ବୁଝିବି ବୋଇଲି ॥
ହେ କ୍ଷମାନିଧି କର କ୍ଷମା । ଏମନ୍ତ ମନେ କରି ବ୍ରହ୍ମା ॥
କୃଷ୍ଣଚରଣତଳେ ପଡି । ରହିଲା ଚତୁର୍ମୁଣ୍ଡ ମାଡି ॥
କୃଷ୍ଣ ବୋଇଲେ ଉଠ ବ୍ରହ୍ମା । ବୁଝିବ ପର ମୋ ମହିମା ॥
ଆଜ୍ଞା ପ୍ରମାଣେ ଉଠି ବେଗେ । ଚଳନ୍ତେ ସ୍ୱହିଁ ସ୍ୱରଦେଗ ॥
ଯେ ତରୁଲତା ଅବ ତୃଣେ । ଯେ ଖଗ ମୃଗ ବୃନ୍ଦାବନେ ॥
ବତ୍ସ ବାଳକ ଆଦ ନର । ସମସ୍ତେ ଶଙ୍ଖ ଚକ୍ରଧର ॥
ଗରୁଡାସନ ଚତୁର୍ଭୁଜ । କୋଟି ବୈକୁଣ୍ଠନାଥ ତେଜ ॥
ଐଶ୍ୱର୍ଯ୍ୟ ସମ୍ପତ୍ତିରେ ଶୋଭା । ସବୁଙ୍କ ଆଗେ ବ୍ରହ୍ମା ଉଭା ॥
ଜୟ ବିଜୟ ଡାକୁଛନ୍ତି । ବ୍ରହ୍ମାଏ ଦର୍ଶନ କରନ୍ତି ॥
କେ ଅଷ୍ଟମୁଖ କେ ଷୋଡଶ । କାହାର ବଦନ ବତିଶ ॥
କେ ଶତେ ସହସ୍ରେକ ଲକ୍ଷେ । ବ୍ରହ୍ମାଏ କୋଟି କୋଟି ମୁଖେ ॥
ଅନନ୍ତମୁଖୀ ଧାତା ଏକ । ବ୍ରହ୍ମା ସାକ୍ଷାତ ଦେଖିଲେକ ॥
ବାସୁକୀ ଶିବ ସନକାଦ । ଯେ ଦଗପାଳ ଇନ୍ଦ୍ରଆଦ ॥
ସିଂହଦୁଆରେ ଛନ୍ତି ରହି ଦର୍ଶନେ ଅବକାଶ ନାହିଁ ॥
ଅନନ୍ତମୁଖୀ ବ୍ରହ୍ମାଏକ । ଦ୍ୱାରକ ଜଗିଛି ଅନେକ ॥
ମୋର ଜଣାଣ ଅଛୁ କର । ସନ୍ଧାନ ଦେବ ମୁଁ ଭ୍ରମର ॥

ସ୍ଥାନେ ବ୍ରହ୍ମାଙ୍କୁ କହନ୍ତି । ଚନ୍ଦନ ଲାଗି ହେଉଛନ୍ତି ॥
ଆଉ ଟିକାଏ ମଠ କର । ଜଣାଣ ହୋଇବ ତୁମ୍ଭର ॥
ଏ ବ୍ରହ୍ମା ମୃଣ୍ମଗଦାଧର । ରୁଦ୍ର ସନ୍ତୁଷ୍ଟେ କ ଶତ୍ରୁଦ୍ୟୋତ ॥
ଏ ଅବକାଶେ ସ୍ଥାନ ଯାଇ । ପ୍ରଭୁଙ୍କ ଛାମୁରେ ଜଣାଇ ॥
ହେ ଦେବଦେବ ସ୍ୱଜ୍ଞେଶ୍ୱର । ଅଟୁଛ କାରୁଣ୍ୟସାଗର ॥
ଅନେକ ସିନ୍ଧୁ ଯା ଗହଣେ । ଆଉ ଯାବତ ତୀର୍ଥଗଣେ ॥
ସୂର୍ଯ୍ୟମଣ୍ଡଳ ଗଲା ବୁଡ । ଚନ୍ଦ୍ରମଣ୍ଡଳରେ ଲହଡ ॥
ତାରା ମଣ୍ଡଳ ମଧ୍ୟେ ଜଳ । ଘୋଟିଲା ସେ ଧ୍ରୁବମଣ୍ଡଳ ॥
ସୁମେରୁ ଶିଖାଯାଏ ବୁଡ଼ି । ଦଶଇ ସମୁଦ୍ର ଲହଡ଼ି ॥
ତୋର ଚରଣ ଦରଶନେ । ଅଟୁଛୁ ଆନନ୍ଦର ମନେ ॥
ଆଜ୍ଞା ହୋଇଲେ ଦେହୁଁ ଘାତ । ନୋହିଲେ ଯିବ ସେ ବାସ୍ତୁତ ॥
ଆସୁ ବୋଇଲେ ଶିଶ୍ୱବସ୍ତ । ବ୍ରହ୍ମାମାନଙ୍କୁ କଉ ପନ୍ଥ ॥
ଆଜ୍ଞା ପ୍ରମାଣେ ବ୍ରହ୍ମା ଗଲେ । ହଂସ ବାହନ ଉଡ଼ାଇଲେ ॥
ସେ ମାୟା ସମୁଦ୍ର ଲହରୀ । କେ ଭଲ୍ଲି ହଜ ଯିବ ତରି ୨୨୦
ଅନେକ ଉଚ୍ଚେ ହଂସ ଉଡ । ବାଜଇ ସମୁଦ୍ର ଲହଡ ॥
ହଂସ ବା କେଣେ ଗ୍ରାସିଗଲା । ବ୍ରହ୍ମା ସେ ଜଳେ ବୁଡ଼ିମଲା ॥
ପଡ଼ନ୍ତି ଉଡ଼ନ୍ତି ବୁଡ଼ନ୍ତି । ଥୋକାଏ ଦୂର ପହଁରନ୍ତି ॥
ଏରୂପେ କେତେ କାଳ ଗଲା । ବ୍ରହ୍ମା ସେ ଜଳେ ଭ୍ରମୁଥିଲା ॥
ଅତି ଦୁର୍ବଳ ଅତି କ୍ଷୀଣ । କେବଳ ରହିଛି ଜୀବନ ॥
ଏମନ୍ତ ବେଳେ ଅଷ୍ଟ ଆଖି । ସମୁଦ୍ରେ ବାଲୁକୁଦ ଦେଖି ॥
କୃଷ୍ଣ ସଙ୍ଗରେ ଗୋପସୁତ । ଯେମାନେ ଭୁଞ୍ଜୁଥିଲେ ଭାତ ॥
ତହିଁରୁ ଗୃହ ପାଞ୍ଚ ଜଣ । ବ୍ରହ୍ମା ଦେଖିଲା ବଦ୍ୟମାନ ॥
ତାହାଙ୍କୁ ବୋଲଇ ବଚନ । ମୋହର ଯାଉଛି ଜୀବନ ॥

ବାଡ଼ି ବଢ଼ାଇ ମୋତେ ଦିଅ । ଏଥୁଁ ଉଦ୍ଧାର କର ନିଅ ॥
ବାଳକେ ଏ କଥା ଶୁଣିଲେ । କଠାଉ ପଟେ ଫିଙ୍ଗିଦେଲେ ॥
କଠାଉ ଅବଲମ୍ବ ଯାଇ । କୂଳେ ଲାଗିଲେ ବ୍ରହ୍ମା ଯାଇ ॥
ମାଗିଲେ ଦିଅ ଅନ୍ନ ଦାନ । ନୋହିଲେ ଗଲାଣି ଜୀବନ ॥
ବାଳକେ ବୋଇଲେ ହୋ ଶୁଣ । ଏ ଯାଣି ବଢ଼ିଲା ଭୋଜନ ॥
ପଚର ପଚାଇଲୁଁ ଯହିଁ । ଅନ୍ନ ଗୁଡ଼ାଏ ଅଛୁ ରହିଁ ॥
ତା ଶୁଣି କହେ ଅଷ୍ଟଆକ୍ଷି । ସକଳ ଧର୍ମ ଆତ୍ମା ରକ୍ଷି ॥
ଆତ୍ମା ସେ ଶ୍ରୁତିବେଦଧର୍ମ । ଆତ୍ମା ଲୁପଲେ ସର୍ବକର୍ମ ॥
ଏମନ୍ତ ବୋଲି ପଞ୍ଚ ଆଣି । ଭୁଞ୍ଜି ଲାଗିଲେ ପଦ୍ମଯୋନି ॥
ବ୍ରହ୍ମାଙ୍କୁ ଦେଖି ଗୋପସୁତ । ମନରେ ପାଇ ଅଚମ୍ଭିତ ॥
ଏ ଶ୍ରୁତିମୂଳର ମନୁଷ୍ୟ । ଦେଖ ହେ ଅଛହିଁ ରହସ୍ୟ ॥
ଏହାଙ୍କୁ ବାନ୍ଧି ନେଲ ଯିବା । ସେ ପଦାମ୍ବୁଜେ ସେବୁଥିବା ॥
ଏରୂପେ ବାଳକ ବତ୍ସର । ମାୟା ଛାଡ଼ିଲେ ବେଣୁଧର ॥
ସେ ପଞ୍ଚମାନ କରେ ଘେନ । କୃଷ୍ଣ ସମ୍ମୁରେ ପଦ୍ମଯୋନି ॥
କୃଷ୍ଣ ବୋଇଲେ ହସ୍ତେ ନ ସେ । ଉଚ୍ଛିଷ୍ଟ ପଞ୍ଚ ପ୍ରାପ୍ତ ଦୋଷେ ॥
ପଞ୍ଚ ଖାଉଁଛି ଅନ୍ନ ଗାଥ । ଆମ୍ଭ ମହିମା ବୁଝିଥାଅ ॥
ପଞ୍ଚ ପକାଇ ବ୍ରହ୍ମା ଦେଲେ । କୃଷ୍ଣର ଚରଣେ ପଡ଼ିଲେ ॥
ହାତ ଯୋଡ଼ିଲେ ବେଦକର । ଡରେ କମ୍ପନ୍ତି ଥରହର ॥
ବ୍ରହ୍ମା ବୋଇଲେ ପ୍ରଭୁ ଶୁଣ । ଦାସର ଦୋଷ ତୁ ନ ଘେନ ॥
ଗର୍ବଗଞ୍ଜନ ବାନା ତୋର । ତୁ ସର୍ବ ଗଞ୍ଜିଲୁ ମୋହର ॥
ହେଲେ ବୁଝାଇଲୁ ମହିମା । ଏବେହେଁ ଦୋଷ କର କ୍ଷମା ॥
କୃଷ୍ଣ ବୋଇଲେ ମାଗ ବର । ମାଗିଲେ ବଜଢ କୃଷ୍ଣର ॥
କୃଷ୍ଣ ବୋଇଲେ ସ୍ୱବେ ଥିବ । ସ୍ୱବକୁ ବଜଢ ହୋଇବ ॥

ଅନେକ ସ୍ତୁତି ବ୍ରହ୍ମା କଲେ । ବତ୍ସା ବାଳକ ଦେଇ ଗଲେ ॥
ବତ୍ସାଙ୍କୁ ଘେନି ଗୋପବାଳେ । ମିଳିଲେ ବନଭୋଜୀ ବେଳେ ॥
ଦେଖ ଆଣିଲୁ ବତ୍ସା ଯାଇ । ତୁମ୍ଭ ଭୋଜନ ବଢ଼ି ନାହିଁ ॥
କୃଷ୍ଣ ବୋଇଲେ ଭଲ ଭଲ । ଅଛହିଁ ବ୍ୟସ୍ତେ ହୋ ଅଇଲ ॥
ଅମ୍ଭେ ଦୁଇ ହିଁ ଗ୍ରାସ ଭକ୍ଷ । ତୁମ୍ଭେ ଅଇଲ ବତ୍ସା ଘେନି ॥
ଏରୂପେ ବୋଇଲେ ଗୋବିନ୍ଦ । ହସ ହସନ୍ତି ମନ୍ଦ ମନ୍ଦ ॥
ବ୍ରହ୍ମା ଯେ ହର କରିଥିଲା । ପୃଥିବୀ ବରଷେ ହୋଇଲା ॥
ବାଳକେ ନ ଜାଣିଲେ ଯହିଁ । ବାଛୁରୀ ନ ଜାଣିବେ କହିଁ ॥
କୃଷ୍ଣର ମାୟା ଅଗୋଚର । ଯହିଁ ଭ୍ରମିଲା ବେଦବର ॥
କୃଷ୍ଣ ପ୍ରକାଶିଥିଲେ ଯେତେ । ବାଳକ ବାଛୁରୀ ସାକ୍ଷାତେ ॥
ଛବସ୍ତ ଅସ୍ତ ଯେ ହୋଇଲେ । ଦର୍ପଣ ଯେସନେ ଲେଉଟିଲେ ॥
ଜାଣି ଗୋପୀଙ୍କ ମନୋରଥ । ଏରୂପେ ଦେଲେ ଗୋପୀନାଥ ॥
ବ୍ରହ୍ମାର ଦରଶନ ବେଳେ । କୃଷ୍ଣ ବୈକୁଣ୍ଠନାଥ ହେଲେ ॥
ଗୋଗୋଷ୍ଠେ ଥିଲେ ଗୋପୀ ଯୋଡ଼େ । ସେ ରୂପ ଦେଖି ଏକେଏକେ
ଯେ ରୂପ କଲେ ଅନୁମାନ । ଶୁଣ କହିବା ସେ ବିଧାନ ॥
ହେମକଦମ୍ବ ମୂଳେ ଉଭା । ପ୍ରଚଣ୍ଡ ଦଶୁଅଛି ପ୍ରଭା ॥
ଛନ୍ନଯମୁନା କଳ କଳ । ନ ପିଏ ଲୋଚନ ସ୍ଥିରତ ॥
କୁଙ୍କୁମ ଦଶେ ରବ ଅଙ୍ଗ । ନ ଦେଖି ଇନ୍ଦ୍ରଧନୁ ଶୋଭା ॥
କୃଷ୍ଣର ପ୍ରାୟ ଚକ୍ଷୁ ବେନି । କେବଳ ନାହିଁ ସେ ସୁହାଣି ॥
ଅଧର ଗୋବିନ୍ଦ ସଦୃଶ । କେବଳ ନାହିଁ ଟି ସେ ହସ ॥
ସେହି ସଦୃଶେ ପୀତାମ୍ବର । ପିନ୍ଧିବା ଲଳୁଚି ଅନ୍ତର ॥
ସେହି ଚରଣ ସଉସମ । କେବଳ ନୋହେ ତ୍ରିଭଙ୍ଗିମ ॥
ପୁଚ୍ଛାଏ ଦୂଜ ଗୋ ଏହାର । ଏ ନୁହେ ଅମ୍ଭ ବେଣୁଧର ॥

ତଡ଼ାଗ ପିଠି ପରେ ବସି । ସ୍ବର୍ଗୁଁ ପଡ଼ଲା ପ୍ରାୟେ ଖସି ॥
ଏଡ଼େ ତଡ଼ାଗ ଏ ବନର । ଦେଖିଲା କାହୁଁ ତ ଅମ୍ବର ॥
ଏ ବନ ଭୂମିର ଏ ମୋହେ । କହୁଁ ଅଇଲା କ ଉପାୟେ ॥
ଗୋପ ପୁଅଙ୍କ ଭାବ କହ । ଏ ବନପକ୍ଷୀ ଗତ ରହ ॥
ଏହାଙ୍କୁ ବିଶ୍ବାସ କ ଯିବ । ଏ କଂସସ୍ବଜାର ବାନ୍ଧବ ॥
ତୋହଲେ ଏତେ ତେଜସ୍ବର । ତେ କୃଷ୍ଣ ବନ୍ଧୁ ଏ ବନର ॥
ଯେବେ ତୋ ଦେଖି ଅଲୋଡ଼ର । କ କହ ତାହାଲ ଅନ୍ତର ॥
ତଡ଼ାଗତଡ଼ା ଚତୁର୍ଭୁଜ । ଅମ୍ଭେ ଦେଖିଲୁ ବନେ ଆଜ ॥
ତେ ଏହା ପରେ କରବ । ଏବ ଏଷଣି ଉଡ଼ିଯିବ ॥
ଏମନ୍ତ ବୋଲି ଗୋପୀମାନେ । ଗଲେ ଯେ ଯାହାର ଭବନେ ॥
ଅପୂର୍ବ ପ୍ରାସ୍ତୁ ପ୍ରତେ ଗଲେ । ସ୍ନେହଲୋଚନେ ତ ଦେଖିଲେ ॥
ଦ୍ବିଭୁଜ କୃଷ୍ଣ ବେଣୁଧର । ମୟୂରଚନ୍ଦ୍ରିକା ଶେଖର ॥
ମଞ୍ଜୀର ମକର କୁଣ୍ଡଳ । ପୀତବସନ ବନମାଳ ॥
କଙ୍କଣ କିଙ୍କିଣୀ ନୂପୁର । ନବକିଶୋର ନଟବର ॥
ଅରୁଣ ଲୋଚନ କମଳ । ସୁପ୍ରେମ କଟାକ୍ଷ ଚଞ୍ଚଳ ॥
ମଧୁର ହାସ ମନ୍ଦ ମନ୍ଦ । ଦର୍ଶନେ ବଢ଼ଇ ଆନନ୍ଦ ॥
ଶ୍ରୀଶ୍ୟାମସୁନ୍ଦର ଶୋଭନ । ଦେଖି ସ୍ବରତ ନବଘନ ॥
ତ୍ରିଭଙ୍ଗି ଛନ୍ଦେ ଅବଲମ୍ବ । ତରୁ କୁସୁମିତ କଦମ୍ବ ॥
ସୁଗନ୍ଧ ଶୀତଳ ସମୀର । ବହେ କାଳନ୍ଦୀନଦୀ ନୀର ॥
ସୁଶୋଭ କୁଞ୍ଜ ବୃନ୍ଦାବନ । ଏ ବ୍ରଜବାସିଙ୍କର ଧ୍ୟାନ ॥
ଏବେ ହୋ ଶୁଣ ଏକମନେ । ଗୋପୀ ଯେ ଖୋଜୁଥିଲେ ବନେ ॥
କୃଷ୍ଣର ଉଦ୍ଦେଶ୍ୟ ନ ପାଇ । ବୁଲନ୍ତି ବାଇ ପ୍ରାସ୍ତୁ ହୋଇ ॥
ଅନାଇଁ ବନ ତରୁ ଲତା । ପୁଚ୍ଛନ୍ତି ଗୋବିନ୍ଦ ବାରତା ॥

ଅହେ କଦମ୍ବ ତରୁବର । ତୁମ୍ଭେ ଦେଖିଲ ବେଣୁଧର ॥
ତୋ ଫୁଲ ବିକାଶ ବେଶର । ପୁଲକ କମ୍ପ ଶୀତକର ।
ଏଣୁ ଜାଣିଲୁ କଥା ସତ । ତୁ ସେ ଦେଖିଲୁ ନନ୍ଦସୁତ ।
କେତକୀ କୁସୁମକୁ ଚାହିଁ । କୃଷ୍ଣଙ୍କୁ ଭେଟିଲୁ ଗୋ ତୁହି ।
ତା ପାଦପଦ୍ମତଳେ ପଡ଼ି । ତୁ ଯେ ଆନନ୍ଦେ ଗଲୁ ଗଡ଼ି ।
ତେଣୁଟି ତୋର କଲେବର । ଧୂଳରେ ଦିଶୁଛି ସୁନ୍ଦର ।
କେ ବୋଲେ ଅରେ ପୁଷ୍ପ କୁନ୍ଦ । ତୁ କଣ୍ଠେ ଦେଖିଲୁ ଗୋବିନ୍ଦ ॥
କୃଷ୍ଣଙ୍କୁ ଦେଲୁ ସୁବାସ । ତେଣୁ ଆନନ୍ଦେ ହସ ହସ ॥
ମୃଦୁ ତ ପଦ୍ମକୁ ଅନାଇଁ । ବୋଲନ୍ତି ଦେଖିଲୁ କହାଇ ॥
ଉର୍ବୀକୁ ବୋଲେ ଯେଣଥିଲୁ । କୃଷ୍ଣକୁ ଦେଖି ଲଜ୍ଜା କଲୁ ॥
ସୁପକ୍ୱ ତାଳମ୍ବକୁ ଚାହିଁ । କୃଷ୍ଣକୁ ରଖିଅଛୁ ତୁହି ॥
ରଙ୍ଗ ଦର୍ଶନ ଦେବେ ମଞ୍ଜୀ । ଦ୍ରୁହାସେ କୃଷ୍ଣ ମନ ରଞ୍ଜି ।
ଏବେ ତୁ ହୋଇଛୁ ସୁହାଗୀ । ଆମ୍ଭଙ୍କୁ ନ କହୁ କି ଲାଗି ॥
ଏମନ୍ତେ ଦେଖିଲେ ହରଣୀ । ତାହାଙ୍କୁ ବୋଲନ୍ତି ଗୋପିନୀ ॥
ଏ ଜଳେ କୃଷ୍ଣ ଦରଶନ । ନିର୍ମଳ ଦିଶୁଛି ଲୋଚନ ॥
କେ ବୋଲେ ମାଳତୀଶ୍ୱ ଚାହ । ଏ ଗୋ ଦେଖିଲେ ଜୀବସ୍ୱାମୀ ॥
ପୁଲକ କମ୍ପ ଉନମତ୍ତ । ଆନନ୍ଦେ ନୃତ୍ୟ ଅଶ୍ରୁପାତ ॥
ଏତେ ଲକ୍ଷଣେ ଏ ଲକ୍ଷିତ । ଏ ସେ ଦେଖିଲେ ନନ୍ଦସୁତ ।
ଏରୂପେ ଖଗ ମୃଗ ବୃକ୍ଷେ । ଗୋପୀଏ ପୁଚ୍ଛନ୍ତି ପ୍ରତ୍ୟକ୍ଷେ ।
କୃଷ୍ଣରେ ହୋଇ ତଦଗତ । ଏହାନ୍ତେ ଲମ୍ବ କର ଚିତ୍ତ ।
ତନ୍ମୟେଣ ହେଲେ ତଦାକାର । ବୋଲନ୍ତି ଅମ୍ଭେ ବେଣୁଧର ।
କେ ବୋଲେ ମୁହିଁ ପଦ୍ମମୁଖ । ଶ୍ୟାମସୁନ୍ଦର ତନୁ ଦେଖ ।
କୃଷ୍ଣର ପଞ୍ଚମ ଲୀଳା । କର ଲଗିଲେ ବ୍ରଜବାଳା ॥

ସୁମର ସ୍ନେହ ଆଚରଣ । ଜନ୍ମେ କୃଷ୍ଣ ପାଦେ ମନ ।
ସୁପକ୍ୱ ଝଟ୍ଟ ପାଶେ ଯାଇ । ନେ ବୋଲେ ଫଳେ ମୁଣ ଦେଇ
ଏଷ୍ଟ ଯୂରନା ଜଷସ୍ତବ । ପ୍ରାଣ ସଙ୍ଗରେ ଦଳି ଯାନ ।
ନେ ଦଅଫୁଲ ଖଣ୍ଡେ ଚର । ବୋଇଲା ମୁଁ ବଢା ଅଇର ।
ନେ ଅଛ ଉତ୍ତର ଗୋପିକା । ଭାଙ୍ଗିଲା ରମ୍ଭା ଓଷ୍ଠ ସେନ ।
ବୋଇଲା ମୁଁ ନନ୍ଦନନ୍ଦନ । ଭାଞ୍ଜିଲି ଯାମଳାର୍ଜ୍ଜୁନ ।
ଯଜ୍ଞସ ଫଳ ଭୋଜନ କର । ନେ ଦେଖ ଗୋବର୍ଦ୍ଧନଧାରୀ ।
ସଖୀଙ୍କ ଠୁଳ ଛମ୍ପା ଯହିଁ । ନେ ଗୋପୀ ନାଚୁଅଛୁ ତହିଁ ।
ସହସ୍ରେ ଫଣା କାଳୀୟର । ଦେଖ ଚରଣେ ଦଳି ଚୂର ।୩୦୦।
ମୃଣାଳ ଖଣ୍ଡ ଧରେ ସେନ । ମୁରଲୀ ଧରା ନେ ଗୋପିକା ।
ତ୍ରିଭଙ୍ଗଛନ୍ଦେ ଉଭା ହୋଇ । ବୋଲଇ ଗୋପୀଙ୍କି ଅନାଇ ।
କପି ଅଇଲ ବଳ ଘାଟରେ । ତୁମ୍ଭଙ୍କୁ ନେଉଥିବେ ଘରେ ।
ଯାଅ ଗୋ ସେବ ନନ୍ଦସୁତ । ଲୋକରେ ନ କର ଅନୀତ ।
ଏରୂପେ କୃଷ୍ଣଭାବେ ଖେଳ । ଗୋପୀଏ ହରଷେ ବ୍ୟାକୁଳ ।
ସହଜେ ସାଲୋକ୍ୟ ସମୀପ୍ୟ । ହରଷେ ହୋଇଲେ ସାରୂପ୍ୟ ।
ଜବନ ଦଶା ଯଥୁପର । ସର୍ବେ ହୋଇଲେ ମୂର୍ଚ୍ଛିତ ।
ମନ ଜୀବନ ଚଇତନ । କୃଷ୍ଣର ଦେହେ ହେଲେ ଲୀନ ।
ସାଲୋକ୍ୟ ମୁକ୍ତିରେ ପଶିଲେ । ନେବେବେଁ ତହୁଁ ନ ରହିଲେ ।
ଉଦାସ ହୋଇ ତହୁଁ ଆସି । ପୁଣି ଭଜନଭାବେ ପଶି ।
ପୁଣ ଲେଉଟନ୍ତି ଭଗବାନ । ସରସ ରସ ଅସ୍ୱାଦନ ।
ଏରୂପେ ଶ୍ରୀହରଙ୍କୁ ଆସି । ରାସମଣ୍ଡଳମଧ୍ୟେ ପଶି ।
ଷୋଳସହସ୍ର ଗୋପୀ ଠୁଳ । ମୁନି ବୋଲନ୍ତି ହେ ଭୂପାଳ ।
ଏ ନନ ଗୋପିକା ବଚନ । ଶୁଣିଲୁଟିକ ଦେଇ ମନ ।

ଶ୍ରୀନ ବୋଲନ୍ତି ମନ ଶୁଣ । ଯାହା ପୁଛିଲ ତପୋଧନ ॥
ସୁଜନେ ଏଣେ ହଅ ରତ । ଏ ଗୀତ ପ୍ରେମପଞ୍ଚାମୃତ ॥
ସେ ଗୋପୀନାଥ ପାଦେ ମତି । ଭଣଇ ସୁଜନ ଭୂପତି ।୪୪୬।

ଇତି ଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତି ବିବେକ ଗ୍ରନ୍ଥରେ ମନଜ୍ଞାନ ଶୁକ ପରୀକ୍ଷିର ସମ୍ବାଦେ ଲଲ୍ୟ ବ୍ରଜକନ୍ୟା କଥନ ଶର୍ତ୍ତିପୁ କଥନେ ନାମ ଅଷ୍ଟମୋଽଧ୍ୟାୟଃ ।

---

## ନବମ ଅଧ୍ୟାୟଃ ।

ଶ୍ରୀନ ବୋଲନ୍ତି ମନ ଶୁଣ । ମୁନି କହନ୍ତି ତୋଷ ମନ ॥
କୃଷ୍ଣଙ୍କୁ ଖୋଜ ବନେ ବନେ । ନିରାଶ ହୋଇ ଗୋପୀଗଣେ ॥
ରାସମଣ୍ଡଳୀ ମଧ୍ୟେ ମିଳ । ଷୋଳସହସ୍ର ଗୋପବାଳୀ ॥
ସମସ୍ତେ ହୋଇ ଏକଠୁଲ । କୃଷ୍ଣ ଦଳବା ନଲେ ମୂଳ ॥
କାନ୍ଦନ୍ତି ଅତି ଶୋକଭରେ । ଷୋଳସହସ୍ର ଉଚ୍ଚସ୍ୱରେ ॥
ଗୋପୀଙ୍କ ଶୋକ ଉଚ୍ଚ ସ୍ୱନ । ପୂରିଲା ଦ୍ୱାଦଶ ବିପିନ ॥
କାରୁଣ୍ୟ ରସ ଆସ୍ୱାଦନ । କଲ ସନ୍ତୋଷ ଭଗବାନ ॥
ଦୟାସାଗର ଶ୍ରୀବତ୍ସାଙ୍କ । ନାହିଁ ସହିବ ତାଙ୍କ ଦେହ ॥
ଗୋପୀଙ୍କ ଶୋକକ୍ରନ୍ଦନ ଧ୍ୱନି । କୃଷ୍ଣ ଅଧୈର୍ଯ୍ୟ ହେଲେ ଶୁଣି ॥
ଗୋପୀଙ୍କ ଚିନ୍ତ ବନଅର । କୃଷ୍ଣର ଶୋକ ଅଗୋଚର ॥
କାନ୍ଦନ୍ତି ଅତି ଉଚ୍ଚ ସ୍ୱରେ । ମିଳିଲେ ଗୋପୀଙ୍କ ମଧ୍ୟରେ ॥
ଏକାଲକ୍ଷଣେ ଏକାବେଳେ । ସଭିଙ୍କ ଲଗାଇଲେ କୋଳେ ॥
ସର୍ବେ କୃଷ୍ଣଙ୍କୁ ଆଗେ ଦେଖି । ଗୋପୀଙ୍କ ଅଙ୍ଗେ ବ୍ୟଥା ଥାଇ ॥
ସର୍ବେ ବୋଲନ୍ତି ଆରେ ମୋତେ । କୃଷ୍ଣ ଭେଟିଲେ ହୃଦଗତେ ॥
ମୋତେ ଅନାଇଁ କଲେ ଶୋକ । ନୟନ ପୋଛିଲେ ଲୋତକ ॥

ଅଧରେ ସୁଧା ଅଛୁ ପୂର । ସମସ୍ତେ ପିଅ ଭୁଲ କର ॥
ଅଧିରେ ଦଶ ଦନ୍ତସାର । ଲୁଧିଲ କୋହଳ ବ୍ୟାକର ॥
ପ୍ରତ୍ୟକ୍ଷେ ଚଲ ଦଶିଥିବ । ଶଣ୍ଡିଲା ହୃଦୟ କହିବ ॥
ଚେ ବୋଲେ ଶୁଣ ବେଣୁପାଣି । ମୁଁ ତୋର ଦଣ୍ଡ ଅଛୁ ଜାଣି ॥
ତୁମ୍ଭର ମଞ୍ଜା ଅଛି କ୍ଷୀଣ । ବଶେଷେ ନ ଥିବ ବସନ ॥
ତ୍ରମା ଜାନୁ ଯୁଗ୍ମ ରମ୍ଭା ତରୁ । ଜଙ୍ଘ ଦମ୍ଭ ଅଛି ଗରୁ ।
ଏ ଦଣ୍ଡ କପଟର ହେବ । ଆଜ ତୁ କର ଅନୁଭବ ॥
ମୋ ଉଚ୍ଚକୁଚ ହେମଗିରି । ତୁଟେ ପଡ଼ିବ ବୋଲି ଡର ॥
ତୁ କରକମଳେ ଧରିବୁ । ଅନ୍ଧାରେ ପୁଷ୍ପ ଶେଯେ ଥିବୁ ॥
ଦଶିବ ଭୁଜ ମୂଳେ ତୋର । ମୋ କଣ୍ଠମୂଳ ଲୁଲେ୍ୟ କର ॥
ଚେ ବୋଲେ ହେ ନନ୍ଦନନ୍ଦନ । ଆଜ କରିବ ତୋତେ ମନ ॥
ଦେଖିଲେ ମୋର ଅଧୋମୁଖ । ଦୂରେଣ ମଣିବୁ ସବୁ ସୁଖ । ୬୦ ।
ମୋ ଆଗେ ଥିବୁ ଉଷ୍ଣ ହୋଇ । କହିବୁ ବାକ୍ୟ କଣ୍ଟୁଆଇଁ ॥
ଚରଣ ଚରଣ ଧରିବୁ । ଦଶନେ କ୍ଷଣି ହଁ କରିବୁ ॥
ଜାଗରେ କମ୍ପୁଥିବ ଅଙ୍ଗ । କହିଲ ବାକ୍ୟ ସ୍ୱରଭଙ୍ଗ ॥
ଲୁଷ୍ଟମଣରେ ପ୍ରାଣ ସଙ୍ଗ । ତୁସେ ବୋଲିବୁ କନକଲା ॥
ତୋର ଚରଣେ ମୋର ବଧ । ନ କର ଏ କଳଙ୍କ ସଧ ॥
ହେ କୃପାମୟି ଗୁଣବତି । ହେ କାମଭୂପତି ସମ୍ପତ୍ତି ॥
ଖଞ୍ଜନ ଗଞ୍ଜନ ଲୋଚନା । ମଦନ ମଦ ବିମୋଚନା ॥
ମୁଖ ଚନ୍ଦ୍ରମା ଉଦେକର । ଅନଙ୍ଗ ଅନ୍ଧକାର ହର ॥
ମଧୁର ବାକ୍ୟ ମନ୍ଦ ହାସ । ଅମୃତ କଳଶ ବରଷ ॥
ଅନଙ୍ଗ ଅନଳ ଲଗାଅ । ହେ ପ୍ରିୟେ ମୋତେ ପ୍ରାଣ ଦଅ
ତୋର ଅଙ୍ଗ ଦେଖିଥିବୁ । ଲୁଳିଣ ହୃଦୟ ହୋଇବୁଁ ॥

ତୁ ଅଛ ହୋଇବୁ ଅକୁଳ । କେ ଦେଖାଇବ ଭୁଜମୂଳ ॥
କାହୁଁ ଦେଖିବୁ କୁଚସୀମା । ଦୃଷ୍ଟି କି ହେବ ଲବଙ୍ଗିମା ॥
ନୟନ କୋଣେ ନ ଚାହିଁବୁ । ଦ୍ରୁହାସ କାହୁଁ ଦେଖାଇବୁ ॥
କୁଚ ସ୍ପରଶ ଆଲିଙ୍ଗନ । କେ ଦେବ ସେ ସବୁ ଚୁମ୍ବନ ॥
କଣ୍ଠ କୁଣ୍ଡଳ ସ୍ୱନ ହର । ଏ କଳ ଶଙ୍ଖର ପାଟସ୍ୱର ॥
ଇସେ ଅବେଶ ହେଲୁଁ ତୋର । ସେ କଥା ଛଡ଼ି ବେଣୁଧର ॥
ପ୍ରେମ ସୁରସ ଲସ ଆଉ । କେ ଦେବ କୁଆଁଇବ ଅଉ ॥
ଦୁର୍ଲ୍ଲଭ ଦୃଢମାନ ଦେଖି । ଅଧୈର୍ଯ୍ୟ ହେଲୁ ପଦ୍ମଆଖି ॥
ଅଞ୍ଜନ ଗୁଣ ପଢାଇବୁ । କହର ନିୟମ କରବୁ ।୭୦।
ତୋର ନିୟମ ହେଲେ ଶରେ । ମୁଁ ତହିଁ ନ ଯିବ ପରତେ ॥
ଶିକସ୍ତ ତତ କୁଳ କର । ନିୟମ କରବୁ ତୁ ଦର ॥
ଅଉ ମୁଁ ନ କରବ ଦୋଷ । ହେ ପ୍ରିୟେ ଛଡ଼ ଏବେ ରୋଷ ॥
ଯେବେ କରବ ଦୋଷ କ୍ଷମା । ଦେବ ସୁରଭ ସ୍ମଣସୀମା ॥
ସ୍ନେହମିଶ୍ରିତ ହୋପମାନ । ଗୋପୀଏ ବୋଲନ୍ତି ବଚନ ॥
କୃଷ୍ଣ ବୋଲନ୍ତି ପ୍ରିୟେ ଶୁଣ । ଦୋଷକୁ ଦଣ୍ଡିବା ବିଧାନ ॥
ଦୋଷ ନ ବୁଝି ଦଣ୍ଡ ଦେଇ । ଶ୍ରୁତି ପଣକୁ ନ ଯୋଗାଇ ॥
ସମସ୍ତେ ହୁଅ ଶାନ୍ତଚିତ୍ତ । କହଇ ଶୁଣ ସେ ବୃତ୍ତାନ୍ତ ॥
ମଧୁବନରେ ସନ୍ଧ୍ୟାକାଳେ । ବୁଲୁ ଯେ ଥିଲୁଁ ସଖାମେଳେ ॥
ସୁଗନ୍ଧ ସୁନ୍ଦର ଶୀତଳ । ଦେଖିଲୁଁ ନାନା ବର୍ଣ୍ଣେ ଫୁଲ ॥
ମନରେ କଲି ମୁଁ ବିଚାର । ସେ ଫୁଲ ଅଣିମା ନକର ॥
ପୁଣି ବୋଇଲି ଗୋପସୁତେ । ଫୁଲ ଘେନବେ ଯେଝାମତେ ॥
ମୁଁ ବିଶ୍ୱନଛି ଯହିଁ ପାଇଁ । ତହିଁ କି ଥିବ ଅଉ କାହିଁ ॥
ଏମନ୍ତ ବୋଲି ଗୋଲ ଚଳି । ଦିନ୍ଦୁହେଁ ଭର ପଳାଇଲି ॥

ସମସ୍ତେ ମୋର ସଙ୍ଗେ ଗଲେ । ଫୁଲ ରହିଲା ଯେଉଁ ଡାଳେ ॥
ପଥ ସଂକୀର୍ଣ୍ଣ କଣ୍ଟାବନ । ପଶନ୍ତେ ଛିଡ଼ିଲା ବସନ ॥
ତୁମ୍ଭଙ୍କ ସଙ୍ଗେ ଯୋଜଗଲେ । ତୁମ୍ଭେ ଯେ ଖୁଲନ୍ତ ଗହଳେ ॥
କଣ୍ଟାରେ ଛିଡ଼ିଲା ବସନ । ଚରଣବାହୁ ଜାନୁ ସ୍ତନ ॥
ବହିଲା ରଣରେଖ ପ୍ରାୟ । ହୁଅଲା ଅମ୍ଳାନ କାୟ ॥
ସେ ଯୋଉ ଏକା ଯାଉଥିଲ । ଜଗତେ ବୃନ୍ଦାକୁ ଭେଟିଲ ।
ସଂକ୍ଷ ଛରଳ ଅବା ବନେ । ତାହାକୁ ନେଲ ମୁଁ ଗହନେ ॥
ସେ ପୁଣି ନ ପଲେ ଗୃହ । ବାଛ ନୂପୁର ବୃନ୍ଦା ବାଲି ॥
ମେଘରେ ଦଶଇ ଅନ୍ଧାର । ରହିଁ ମାଡ଼ଇ ମୋତେ ଡର ॥
ଅଦ୍ଭୁତ ସ୍ୱଭାବ ମୋହର । ତୁମ୍ଭଙ୍କ ନୋହେ ଅଗୋଚର ॥
ବନ୍ଧରେ ବସି ପଲ୍ଲେ ଯାଉ । ଦେଖଇ ଜଣେ ସଙ୍ଗେ ଥାଉ ॥
ଏମନ୍ତ ଚିନ୍ତନ ମନରେ । ଦେଲ ମୁଁ ବଶାଇ ଦନ୍ତରେ ॥
ସେ କଥ ମନରେ ଚିନ୍ତନ । ମୋତେ ଲାଗିଲା ବଡ଼ ତ୍ରାସ ॥
ଓଷ୍ଠାଉଁ ଓଷ୍ଠ ଉଁ ପଡ଼ିଲା । ଦଶନ ଅଧର ଛାଡ଼ିଲା ॥
ଭୁଥିର ପ୍ରତ୍ୟକ୍ଷ ଦେଖିଲ । ମାଧବ ବୋଲି ପଳାଇଲ
ଲୁଚି ମୁଁ ଜଗିଥିଲ ଘାଲୁ । ଦେଖିଲ ଭେଟିଲା ତୁମ୍ଭଙ୍କୁ ।
ତେବେ ସେ ଏକା ମୁଁ ଭରସି । ଘୋର ବନକୁ ଗଲି ପଶି ॥
ଆଣିଛି ନାନା ବର୍ଣ୍ଣ ଫୁଲ । ସୁଗନ୍ଧ ଶୀତଳ ଅମୂଲ୍ୟ ॥
ଚନ୍ଦ୍ର ଲୁଚିଲା ନବଘନେ । ବାଟ ମୁଁ ନ ପାଇଲି ବନେ ॥
ଅରଣ୍ୟେ ବଣା ହୋଇଗଲି । ଭ୍ରମିବ ବନେ ମୁଁ ପଶିଲି ॥
ଘୃଣ୍ୟେ ନ ହେଲ ଉଚ୍ଚସ୍ୱନେ । ଶୁଭିଲା ମୋହର ଶ୍ରବଣେ ॥
ଶବଦେ ବାଟ ମୁଁ ପାଇଲି । ତେଣୁ ଗୋ ତୁମ୍ଭଙ୍କୁ ଭେଟିଲି ॥
ନୋହିଲେ ସରିଥିଲା ମୋର । ଜାଣ ନ ଜନ ଯଶୋଦାର ॥

ଏବେହେଁ ଚେଉଁଛ ହୃଦୟ । ବଳେ ମାଡିଲା ମୋରେ ଭୟ ।
ତୁମ୍ଭେ ଗୋ ହୃଦେ ଦଅ କର । ହୃଦୟ ଦମଦମ ମୋର ।
ଗୋପୀଏ ହୃଦେ କର ଦେଲେ । ଏବେହେଁ ଚେଉଁଛି ବୋଇଲେ ।
ଛାଡିଲେ ଗୋପୀ ସବୁ ବେଶ । କୃଷ୍ଣଙ୍କ କରନ୍ତି ବିଶ୍ୱାସ ।
ତସବେ ପୋଛିଲେ ଲୋଚନ । କହନ୍ତି ଏକଲୁ ଅରେନ ।
ଯଶୋଦା ପୁଣ୍ୟବନ୍ତୀ ନାରୀ । ତାହାଙ୍କୁ ପ୍ରସନ୍ନ ଗଉରୀ ।
କିସ ଏହି ପଙ୍କଜି ପ୍ରସାହୁଁ । ବର୍ତ୍ତିଲେ ଏ ଘୋର ପ୍ରମାହୁଁ ।
ଏମନ୍ତ କୃଷ୍ଣ କହେ ପୁଣ । ଶୁଣ ସକଳ ଗୋପୀଗଣ ।
ବୃନ୍ଦା ଯେ କରଅଛୁ ବେଶ । କ୍ଷମା କରିଅ ମୋର ଦୋଷ ।
ଯେବେ ଗୋ ମୋତେ ଦୟାବନ୍ତ । ସମସ୍ତେ ମୋର ପଛେ ହନ୍ତ ।
ମୋତେ ଗୋ ବାଞ୍ଛ ଘେନିଯାଅ । ତା ପଦପଦ୍ମରେ ପହାଅ ।
ତାର କରୁଣା ଯେବେ ହେବ । ଶ୍ରୀହସ୍ତେ ବନ୍ଧନ ଫେଡିବ ।
ତା ଶୁଣି ରାଧା ଯେ ଉତ୍ତର । ମୁଁ ସତ୍ୟ ଦେଉଛି ଯେମନ୍ତ ।୧୨୦
କୃଷ୍ଣହିଁ ସେ କଥା କହିଲେ । ମୋର ମହିମା ବୁଝାଇଲେ ।
ଏମନ୍ତ ବୋଲି ଠାକୁରାଣୀ । ଅଷ୍ଟରେ ବାଞ୍ଛିଲେକ ଅଣି ।
ସଙ୍ଗେ ଘେନ ଗୋପୀବୃନ୍ଦ । ହସି ଯିବାନ୍ତି ମନ୍ଦ ମନ୍ଦ ।
କୃଷ୍ଣ ଯେ ହୋଇ ଭଲ ଭଲ । ଅଛନ୍ତି ରାଧିକା ପଛର ।
ବୃନ୍ଦା ବସିଛି ଅଧୋମୁଖେ । ଭୂମି ଅଙ୍କିତ ନଖ ଲେଖେ ।
ହସ୍ତ ଯେ ଗଣ୍ଡସ୍ଥଳେ ଅଛି । ଚନ୍ଦ୍ର କି ପଙ୍କଜେ ପୋଇଛି ।
ଅଞ୍ଜନ ଅଶ୍ରୁଜଳେ ମିଶି । କଳଙ୍କ ଧଇଲା କି ଶଶୀ ।
କୁଚ ଉପରେ କର ଥୋଇ । ଗିରି ଶିଖରେ ପଦ୍ମ ଅଇ ।
ନାସିକା ପୁଡ଼ା ଫୁଲ ସନ । ଛନ୍ଦୁଛି ସେ ଭଲଲୁସ୍ମନ ।
କବରୀ ଭାର ଲମ୍ବ କେଶ । ଦିଶୁଛି ସୁନ୍ଦର ବିଶେଷ ।୧୩୦।

ସୁମେରୁ ଯୋଡ଼ି ଯେସନ୍ତାଲେ । ଢଳା ପଡ଼ିଲେ ଭୂମିତଳେ ॥
ପ୍ରବାହ ବଢେ ନେତ୍ରଜଳର । ଭିଜିଲେ ବେନି ପୟୋଧର ॥
ଚନ୍ଦ୍ର ନ ଦେଲ ସୁଧାକର । ପୂର୍ଣ୍ଣ ଜଳଦ ଶଙ୍କର ॥
ଉର୍ଦ୍ଧ୍ୱ ଶ୍ୱାସ ଘନ ଘନ । କଣ୍ଠିରେ ନ ସ୍ଫୁରେ ବଚନ ॥
ଅଧର ଜଳହଂସ ବର୍ଣ୍ଣ । କୋପ କୁପଛର ପ୍ରତାପ ॥
ବୃନ୍ଦାବତୀର ଲୋପ ଦେଖି । ସ୍ୱଚ୍ଛ ହୋଇ ପଦ୍ମଆକ୍ଷି ॥
ଗୋପୀଙ୍କି କହନ୍ତି ଆକୁଳେ । ବେଗେ ପଡ଼ାଅ ପାଦତଳେ ॥
ରାଧା କୃଷ୍ଣଙ୍କୁ ପଟ୍ଟେ ଲକ୍ଷି । ବୃନ୍ଦାଙ୍କୁ ବୋଲନ୍ତି ରେ ସଖି ॥
ଆମ୍ଭେ କୃଷ୍ଣଙ୍କୁ କଥା ସତ । ତାହାର ନୁହଇ ଅଦ୍ଭୁତ ॥
ସେ ବ୍ରଜସ୍ୱନେନ୍ଦ୍ର ଭ୍ରମର । ସେ ନ ଜାଣନ୍ତି ବହୁବାର ।୧୪୦
ତୁମ୍ଭର ଷୋଡ଼ଶ ବୟସ । ମଦନ ରାଜାର ସର୍ବସ୍ୱ ॥
ଜାନୁ ଯୁଗଳ ରମ୍ଭାତରୁ । ନିତମ୍ବ ବିମ୍ବ ଅଛ ଗରୁ ॥
ତୋ ଘନ ପୀନ ଉଚ୍ଚକୁଚ । ସୁମେରୁ ଶୃଙ୍ଗ ପ୍ରାୟ ଉଚ୍ଚ ॥
କବରୀ ଗ୍ରୀର ଲମ୍ବବେଣୀ । ନାଭାର ଲୂପ୍ତେମ ସୁବେଶ ॥
ଚନ୍ଦ୍ରଦ ହାର ନୀଳାମ୍ବର । ଲଦ ହୋଇଛି ଅଳଙ୍କାର ॥
ରୂପ ଯୌବନ ଗୁଣ ଗର୍ବ । ତୋ ଦେହେ ପୂରିଅଛି ସର୍ବ ॥
ସହଜେ ଗରୁଆ ହୋଇଲୁ । ଓଜ୍ଞାଉ ଉଜ୍ଞାଉ ପଡ଼ିଲୁ ॥
ଅଧରେ ରୁଧିର ଦେଖିଲା । ଛୋଡ଼ିଲେ କୃଷ୍ଣ ପଳାଇଲା ॥
ସେ ଗଳାଚଥା ଧରିଥିବ । ଷଟେ ନ କୃଷ୍ଣଙ୍କୁ ଛାଡ଼ିବ ॥
ବାଞ୍ଛ ଆଣିଛୁ ଏବେ ଦେଖ । କେବାର ଆମ୍ଭ ବୋଲ ରଖ ॥
ସମସ୍ତେ ମାଗୁଛୁଁ ତୁମ୍ଭଙ୍କୁ । ତା ଦୋଷ ଦଅ ଟିଗା ଆମ୍ଭଙ୍କୁ ॥
ଏରୂପେ ଗୋପୀଙ୍କ ବଚନ । କୃଷ୍ଣ ଧରିଲେ ତା ଚରଣ ॥
ବୃନ୍ଦା ବୋଇଲା ପାଦ ଛାଡ଼ । ପାରିଲେ ଅଧର ଦସ୍ତଡ଼ ॥

ପୁଣି ଅନାଉଣ୍ଡା ତରୁଣୀ । ଯତନେହେଁ ଦେଖିଲା ବାସେଣୀ ।
ଅହା ମୁଁ ମଉଯାଉ ବନା । ମୋ ଲଗି ଶ୍ରୀହସ୍ତେ ବାନ୍ଧଣା ।
ତୁମ୍ଭଙ୍କୁ କ ବୋଲିବ ରାଧା । ବୁଝିଲି ତୁମ୍ଭର ଶରଧା ।
ସତେହେଁ ବାଜଅଛୁ ଏତ । ହେମବେତ୍ରେ ବନ୍ଦନ୍ତି ଗୋ ଛତ୍ର ।
ସପ୍ରେମେ ଗଦଗଦ ହୋଇ । ବୃନ୍ଦା ବାସେଣୀ ଦେଲେ ଘେର ।
ଗୋବିନ୍ଦ ଯୋଡ଼ମୁଣ୍ଡ ହେଲେ । ବୃନ୍ଦାଙ୍କୁ ଆଲିଙ୍ଗନ କଲେ ।
ଲୋଚନେ ଅଶ୍ରୁ ଥରଥର । ବୃନ୍ଦାହିଁ କଲେ ଆଲିଙ୍ଗନ ।
ଆନନ୍ଦ ଶଙ୍ଖ ବ୍ରଜବାଳୀ । ମିଳିଲେ ବୃନ୍ଦା ବନମାଳୀ ।
ଷୋଳ ସହସ୍ର ପୁଷ୍ପସଜ । ଆଣି ଯେ ଥିଲେ ଦେବରାଜ ।
ଶ୍ରୀହସ୍ତେ କୃଷ୍ଣ ଫୁଲ ନେଲେ । ବୃନ୍ଦାଙ୍କୁ ପୁଷ୍ପେ ସଜ କଲେ ।
ଷୋଳ ସହସ୍ର ଗୋପୀଗଣେ । ସୁବେଶ ହୋଇ ଜଣେ ଜଣେ ।
ମଣ୍ଡିଲେ ପୁଷ୍ପ ଅଲଙ୍କାର । ଅତି ସୁଚତୁରେ ବେଣୁଧର ।
ସଭିଙ୍କି ପୁଷ୍ପ ସଜ କଲେ । ଲୁପ୍ତର ପୂରନ୍ତୁ ଅଞ୍ଚଳେ ।
ଗୋପୀଏ ଫୁଲବଣେ ପଶି । ପୁଷ୍ପ ତୋଳିଲେ ମନତୋଷି ।
ଗୁନ୍ଥିଲେ ଦିବ୍ୟ ମାଳ ଚୂଳ । ସୁଗନ୍ଧ ଶୀତଳ ଅମୂଲ୍ୟ ।
ସମସ୍ତେ ଫୁଲମାଳ ଘେନି । ବର ବରିଲେ ବେଣୁପାଣି ।
ପ୍ରେମ ଦର୍ପଣ ସୁନିର୍ମଳ । ଗୋପୀଙ୍କ ସଙ୍ଗେ ଗୋପାଳ ।
ଗନ୍ଧର୍ବ ମତେ ହସ୍ତ ବନ୍ଧି । ସେ ମନୋରଥ କଲେ ସିଦ୍ଧି ।
ହରଷ ବାଲବେଶ ନୂଆ । ମାଧବୀ କୃଷ୍ଣ ଗ୍ରନ୍ଥିଆ ।
ଅବଳା ଆମ୍ଭ ବେଳ ହୋଇ । ତୋରଣା ପ୍ରାୟେ ପକ୍ଷାବଳୀ ।
ନବ ମଣ୍ଡନ ଚନ୍ଦ୍ରାତପ । ଷଟପଦ ନୋହି କଲେ ପାପ ।
ବୃକ୍ଷ ଶାଖାରେ ଜଳ ମିଶି । ମୂରୁଜ ଭଞ୍ଜ ପ୍ରାୟ ଦିଶି ।
ପକ୍ଷ ଶବଦ ଯଶ କଲେ । ସୁବର୍ଣ୍ଣ ଭୂମି ନ ସ୍ଥାପିଲେ ।

ଶୁଦ୍ଧ ସ୍ୱରରେ ଦ୍ୱିଜଗଣ । କରନ୍ତି ବେଦ ଉଚ୍ଚାରଣ ॥
କାଳନ୍ଦୀତଟେ ହଂସପନ୍ତି । ସ୍ୱଦ୍ୱିଜ ସଙ୍ଗ ବସିଛନ୍ତି ॥
କୋକିଳ ଧ୍ୱନି କଲେ ଘଟ । ନାଚନ୍ତି ନୀଳକଣ୍ଠ ନଟ ॥
ବୃକ୍ଷୁଁ କୁସୁମ ପଡ଼େ ଝଡ଼ି । ଜଏ ପୁଜକେ ଦେଲେ ଖାଡ଼ି ॥
ଭୃଙ୍ଗ ଶବଦେ ମଲ୍ଲି ଫୁଟିଲେ । ମଙ୍ଗଳ ଶଙ୍ଖଧ୍ୱନି କଲେ ॥
କ୍ଷୀର ମେଘ ମୃଦୁନାଦ । ବାଜିଲା ବଜ୍ର ବଧି ବାଦ୍ୟ ॥
କେକେ ମଙ୍ଗଳ ଗାଉଲେ । ମନ୍ଦବା ପୁଷ୍ପ ବୃଷ୍ଟି କଲେ ॥
ରମ୍ଭାଦି ଅପସରା ମିଳି । ଆନନ୍ଦେ ଦେଲେ ହୁଳହୁଳି ॥
ପଡ଼ିଲା ଗଣ୍ଠି ଆଲିଙ୍ଗନ । ଗୋପ ପାଳଙ୍କ ପ୍ରାଣେ ପ୍ରାଣ ॥
ଖାଲି ଖଲ ଗ୍ରାଉଳ ନ ଶେଷ କୁନ କୁମୁଦ ହସ ଦଣେ ॥
ମଳନମୂର୍ତ୍ତେ ଛଳ ଛାର । କନ୍ୟା ସମର୍ପି କନ୍ୟାମାର ॥
ପକ୍ୱ ଚାଳମ୍ଭ ଫଳଭରେ । ପଡ଼ନ୍ତି ବୃକ୍ଷଙ୍କ ମୂଳରେ
କନ୍ୟାଭାର ନ ରହି ଦେଇ । ସମ୍ପତ୍ତି ଚରଣେ ବଳୋଇ ॥
ବୃକ୍ଷୁଁ ପଡ଼ିଲ ଫଳ ପକ୍ୱ । କି ଏ ଦଅନ୍ତି ଜତୁଭୁକ ॥ ୧୯୦ ॥
ବଳେଷା ଚନ୍ଦ୍ରଟାଙ୍କି ଦୁଃଖୀ । କି ଏ କନ୍ୟାର ପ୍ରିୟସଖୀ ॥
କୁମୁଦ କୁଞ୍ଜ ଦୁଃଖ ସୁଖ । କି ହୁଇ କୁଟୁମ୍ବର ମଣ ॥
ଅନ୍ତରେ ଦେଖନ୍ତି ହରିଣୀ । ସାଙ୍ଗୀ ପତ୍ନୀଙ୍କ ସରଣୀ ॥
କଳଙ୍କ ଚନ୍ଦ୍ରମୁଖେ ଛାଣ । କୁଟୁମ୍ବ ଯେବେ ଅସହଣୀ ॥
ଯେ ଖଗ ମୃଗ କୁତୂହଳ । କୁଟୁମ୍ବ ଭୋଜନ ଗହଳ ॥
ବୃକ୍ଷୁଁ ପତ୍ରବମାନ ଝସେ । ତାମ୍ବୁଲ ବଗ୍ଧପଢ଼ି ନ ଶେଷ ॥
ରସାଣ ଜମ୍ବୁନଦ ଜଳ । ଅଧରେ ପ୍ରକାଶେ ତାମ୍ବୁଲ ॥
କୁଞ୍ଜେ ହୋଇଛୁ ମଟଶଯ୍ୟା । ରହିଁ ଉତବେ ସଙ୍ଗ ଲଜ୍ଜା ॥
ଏରୂପେ କିଶ୍ୱ ବଧି ସାର । ସ୍ୱସ୍ତ ମଣ୍ଡଳେ ଦକେଜର ॥

ଗୋପୀଙ୍କ ଗୃହଗୃହେ ହରି । ଷୋଳ ସହସ୍ର ରୂପ ଧରି ।୧୦୦।
ଗୋପୀ ଜାଣନ୍ତି କୃଷ୍ଣ ଏକା । ମୁହିଁ ସେ ସୁଭାଗ୍ୟ ନାୟିକା ।
ମୋ ମୁଖ ଚନ୍ଦ୍ରମା ଚକୋର । ହୋଇଲେ ଶ୍ରୀନନ୍ଦକୁମର ।
ଅନେକ ଯତ୍ନେ ମୋତେ କଲେ । ମୋହର ମାନ ଛଡ଼ାଇଲେ ।
ଅତି ସୁବେଶ କରି ମୋତେ । ଦର୍ପଣ ଦେଖାଇ ଅଗ୍ରତେ ।
ମୋ ପ୍ରତିବିମ୍ବ ହାସ ମନ । ଦର୍ପଣ ଚୁମ୍ବିଲେ ଗୋବିନ୍ଦ ।
ଏଣୁ ଜାଣିଲେ ଦୃଢ଼ କରି । ମୋ ରୂପେ ବଶ ହେଲେ ହରି ।
ଏରୂପେ ସର୍ବ ଗୋପୀଜନେ । ପ୍ରତ୍ୟେକେ ବଖାଣନ୍ତି ମନେ ।
ଏହାନ୍ତେ କୃଷ୍ଣଙ୍କ ଆଦର । ସୁଭାଗୀ ହେଲୁ ଗୋପନାରୀ ।
ଆନନ୍ଦମନେ ହୋଇ ମତ୍ତ । ଆରମ୍ଭ କଲେ ନୃତ୍ୟ ଗୀତ ।
କୃଷ୍ଣର କରେ ଗୋପୀକର । ଅଙ୍ଗୁଳି ଛନ୍ଦ ପରସ୍ପର ।୧୧୦।
ଯୁଗଳ କୃଷ୍ଣ ଏକ ଗୋପୀ । ଦ ଗୋପୀମଧ୍ୟେ କୃଷ୍ଣରୂପୀ ।
ଗୋପୀଙ୍କି ଗୋବିନ୍ଦ ସମାନ । ବତିଶ ସହସ୍ର ପ୍ରମାଣ ।
ନାଚନ୍ତି ମଣ୍ଡଳୀ ଆକାର । ମଣ୍ଡଳୀ ମଧ୍ୟେ ବେଣୁଧର ।
ମୁରଳୀ କଳ୍ପ ଶକ୍ତି ଧରି । ସକଳ ଯନ୍ତ୍ର ନାଦ ପୂରି ।
ଭିନ୍ନ ବାଦ୍ୟଯନ୍ତ୍ର ଯେତେ । ସକଳ ବଂଶୀରନ୍ଧ୍ରଗତେ ।
କିଙ୍କିଣୀ କଙ୍କଣ ନୂପୁର । ରୁଣୁ ଝୁମକ ମନୋହର ।
ଗୋବିନ୍ଦ ଗୋପୀ ଗୀତଧ୍ୱନି । ବ୍ରହ୍ମମଣ୍ଡଳ ଗଲା ଭେଦି ।
ନାଦ ପୂରିଲା ଚଉଦିଗେ । ହେବେ ମୋହିତ ସୁରଲୋକେ ।
ଗୋପୀ ଗୋବିନ୍ଦ ଯୋଗ୍ୟ ବଣି । ନ ସର ମେଳ ମିଶାମିଶି ।
ନୂତନ ନୀଳକାଦମ୍ବିନୀ । ମିଶିଲେ କିବା ସୌଦାମିନୀ ।
ଚମ୍ପକ ଏକ ମରକତ । ସଚଳ ହେଲା କି ନିର୍ମିତ ।
ଅପୂର୍ବ ଗାଢ଼ ସୁନିର୍ମାଣ । କଲେ କି ରୂପଧି ମଦନ ।

ମଧ୍ୟେ ଗୋବର୍ଦ୍ଧନ ପର୍ବତ । ବ୍ରହ୍ମାଣ୍ଡ ଯା ମାୟା ବେଷ୍ଟିତ ॥
ଉପର ଜନ ବାଞ୍ଛା ବୃକ୍ଷ । ଯାର ଅନୁରୂପେ ପ୍ରତ୍ୟକ୍ଷ ॥
ନିର୍ମାୟା ନିର୍ମୋହ ନିର୍ମଳ । ପରମ ଅଗ୍ରା ଅବମୂଳ ॥
ନିଷ୍କାମ ନିକ୍ରୋଧ ନିର୍ଲୋଭ । ଯୋଗୀନ୍ଦ୍ର ଜନଙ୍କୁ ଦୁର୍ଲଭ ॥
ଗୋପୀଙ୍କ ମନୋଭିଳାଷ ପୂର । ସାକ୍ଷୀ-ସ୍ୱରୂପେ ଦରହର ॥
ଛ ରାଗ ଛତିଶ ରାଗିଣୀ । ଆଳାପି ଗୋବିନ୍ଦ ଗୋପିନୀ ॥
ଦେବତାର ରାଗ ଅବର୍ଣ୍ଣିତ । ଆଳାପ ତାନ ସଙ୍ଗୀତ ॥
ତାଣ୍ଡବ ଆଦି ନୃତ୍ୟ ଯେତେ । ଗୋପୀ ଗୋବିନ୍ଦ ପାଦଗତେ ॥
ଯେ ସୁଧା ମୃତସଞ୍ଜୀବନୀ । ସେ ନାଦ ଗୋବିନ୍ଦ ଗୋପିନୀ ॥
ଅଜୀବେ ସ୍ପର୍ଶନେଲେ ଜୀବ । ଜୀବେ ହୋଇଲେ ଜଡ଼ଭାବ ॥
ପାଷାଣ ଦ୍ରବ ହୋଇ ବହେ । ଜଳ ପାଷାଣ ପ୍ରାୟେ ରହେ ॥
ପବନ ହୋଇଲେ ସ୍ଥିରତର । ଅଚଳ ଚଳ ବିପରୀତର ॥
ତୃଣାଦି ଲତା ତରୁବର । ନାଚନ୍ତି ମହାନନ୍ଦଭର ॥
ଭୃଙ୍ଗାଦି ଜୀବ ଖଗ ମୃଗ । ସ୍ତବନେ ଫେଣା ଟେକ ନାଗ ॥
ଯେ ଦାରୁ ଶୁଷ୍କି ପଡ଼ିଥିଲେ । ସେ ଉଭା ହୋଇ ପଲ୍ଲବଲେ ॥
ଅଫଳ ଅପୁଷ୍ପ ଯେ ବୃକ୍ଷ । ଫଳଲେ ଫୁଟିଲେ ପ୍ରତ୍ୟକ୍ଷ ॥
ଯେ ଫଳ-ପୁଷ୍ପ ବୃକ୍ଷ ଥିଲେ । ପୃଥ୍ୱୀରେ ପଡ଼ି ନୃତ୍ୟ କଲେ ॥
ମୁରଲୀ ନାଦର ମହିମା । କହି ନ ପାରେ ହରବ୍ରହ୍ମା ॥
ଶରଦଚନ୍ଦ୍ର ପୂର୍ଣ୍ଣକର । ନିର୍ମଳ ନିଶି ମନୋହର ॥
ବୃକ୍ଷାଦି କୁସୁମ କୁମୁଦ । ଶୋଭିତ ନଦୀ ବାଲିହ୍ରଦ ॥
ତୀରେ ମନୋହର କାନନ । ଗୋପୀ ଗୋବିନ୍ଦ ଲୀଳା ସ୍ଥାନ ॥
ସୁଧାମ ପ୍ରେମ ବୃନ୍ଦାବନ । ଶୃଙ୍ଗାର ରସରେ ନିର୍ମାଣ ॥
ମଦନ ତୁଲ୍ୟ ଚତୁରବର । କୁସୁମ ଶ୍ରୀମୁଖ ସୁନ୍ଦର ॥

ଲତାଏ ସମାନ ଯୁବତୀ । ସେ ବୃକ୍ଷମାନେ ପୁଷ୍ପବନ୍ତୀ ।
କୁସୁମ କୋଳରେ ଭ୍ରମର । ତରଣ ତରଣୀ ସଙ୍ଗର ।
ଡାଳରେ ଯୋଡ଼ ଯୋଡ଼ ଖଗ । ବାନର କୋଳେ ଶାଖାମୃଗ ।
ବୃକ୍ଷ ଆବୋରଛନ୍ତି ଲତା । ବତ୍ସଳ କୋଳେ କି ବନିତା ।
ଲତା ଉପରେ ପୁଷ୍ପ ଅଛି । ଭ୍ରମର ନ ଯାଇ ପାରୁଛି ।
ଯେସନେ ପଇବଧୂକୁଳେ । ଅଣା ବଢ଼ାଇ ମଢ଼ କୋଳେ ।
ଭେଟ ହୋଇବା ବନଥାର । ଏରୂପେ ଭ୍ରମୁଛି ଭ୍ରମର ।
କେଉଁ ଲଭିବା ଲଳୁପରେ । ସଚଳ ସମୀର ସଧୀରେ ।
କି ଏ କାମିନୀ ହୋଇ ମତ୍ତ । କରଇ ରଢ଼ କପଟିତ ।
ମାଲତୀ ଅର୍କ ବଳାଣିଛି । ମଧୁପ କି ଯାଏ ମୂରୁଛି ।
ସୁବର୍ଣ୍ଣ ବର୍ଣ୍ଣେ ଜଳ କାଶ । ନାସୁକ ଅଛି କି ଆବୋର ।
କି ପାଟରେ ଯାଗ ଜ୍ଞେୟକର । ଲୋଷ୍ଟ୍ରି ବବେକ ସମସର ।
କେତକୀ ପାଶେ ଟଙ୍କ ଫଳେ । କଣ୍ଟା ବାଜଇ ବାରବଲେ ।
ଉରଜେ କରଜ ପ୍ରକାଶ । ଏଠାରେ ସେ ରସ ଅଭ୍ୟାସ ।
ଏକର କେନ ରମ୍ଭାସ୍ଥୂଳ । ପଜନସଜ ଉଭଜାଲ ।
ତା ଦେଖି ସୁମରଇ ମନ । ଅଧୈର୍ଯ୍ୟ କାଶଇ ମଦନ ।
କମଳା ନାରଙ୍ଗୀ ଶ୍ରୀଫଳ । ଅଭ ଚକ୍ଷୁଣ ବୃକ୍ଷ ତାଳ ।
ପଟକ ପଜ ପୀନ ଉଚ୍ଚ । ସ୍ମନର ସୁରସ ସୁସ୍ଥ ।
ସୁବାସ ପକ୍ଷାବଳୀ ପ୍ରଭ୍ର । ଏହି ଗଣିକା କୁଚ ଅଗ୍ର ।
ଶୋଭିତ ସୁଗନ୍ଧେ ଭୂଷିତ । ମନକୁ କରନ୍ତି ମୋହିତ ।
କେତକୀ ଫୁଲ ବାସ ପାଇ । ଦୂରୁ ଅଇଲେ ଭୃଙ୍ଗେ ଧାଇଁ ।
ଦେଖିଲେ କଣ୍ଟା ଗାସ୍ଥ ମୂଳ । ନ ବସି କରନ୍ତି ଭ୍ରମଣ ।
କଣ୍ଟାରେ ଯାଉ ପଛେ ପ୍ରାଣ । ଏ ଫୁଲ କରିବା ଚୁମ୍ବନ ।

ଏମନ୍ତ ମାଧବୀ ସେ ରଙ୍ଗ । ସେ ଭଲି କେତକୀର ସଙ୍ଗ ॥
ଯେସନେ ଅଷିଧର ନାସ୍ତି । ଯେବା ହୁଅନ୍ତି ଦୁରନ୍ତସା ।
ଏଣ୍ଡାଙ୍କୁ ଭଜେ ଯେ ପୁରୁଷ । ସେ କାହୁଁ ଲଭିବ ତା' ପାଶ ॥
ଚମ୍ପକ ଯୋଗ୍ୟ ଏ ଭ୍ରମର । ଭଜେ ନ ପଶି କେତକୀର ॥
ପଦ୍ମବନକୁ ଉତ୍ତଗଲେ । ଏ ଭମ୍ଭୁ କଷ୍ଟର ହୋଇଲେ ॥
ଦର୍ପଣୀ ସମ ଲୁନ ଦେଖି । ପ୍ରକାଶ ଦନ୍ତ କଲି ମୁଖ ॥
କେତକେ ବାସ ଲଷ୍ଟ କାହିଁ । ବସେ ନ ରସେ ଭୃଙ୍ଗ ତହିଁ ।
ମୃଗର କଣ୍ଟକ ଦାମିନୀ । ରେଶମ କୁସୁମ ରଙ୍ଗିଣୀ ॥
ଅଭି ନୃତ୍ୟଶୋଭା ରଙ୍ଗ ରୂପ । ମୀରସେ ରସେ ରସଧୂପ ॥
ମୟୂର ସଙ୍ଗେ ମତ୍ତ ହେଲି । ଯେ ତହବାଦ ତହବାଲି ॥
ହଂସ ହସିନୀ ନାଦାରଙ୍ଗେ । କଦମ୍ବ ଖଗ ମୃଗ ସଙ୍ଗେ ॥
ସେ ସବୁ କନ୍ଦରା ବିଳାସେ । ମାଧଅଛନ୍ତି ନାନା ରସେ ॥
ଜପୋଗି କରେ ଗ୍ରନ୍ଥ ସୀମା । ତା ଦେଖି ଚାତୁରୀ ବାମା ॥
କନ୍ଦର ତାର କଳ କାନ୍ତ । ବୋଲେ କପୋଗି ସ୍ୱାଗ୍ୟବନ୍ତ ॥
ଭୁଇଁ ଖଗ ମୃଗ ଉଙ୍ଗେ । ସର୍ବ ଅବେଶ ଲକ୍ଷରଙ୍ଗେ ॥
ଅନଙ୍ଗ ଉନ୍ମାଦର ଭଙ୍ଗେ । ବଢ଼ଇ ଶୃଙ୍ଗାର ରସମଙ୍ଗେ ॥
ଯେ ତରୁ ଲତା ଅବ ତୃଣ । ସମସ୍ତ କାମ ଉଦ୍ଦୀପନ ॥
ଏମନ୍ତ ଯେ କହିବ କେତେ । ସେ ବନ ମନ୍ମଥ ଯେତେ ॥
ବ୍ରହ୍ମା ବାସୁକି ନ ମଦେବ । ଏ ଅବ ଦେବଙ୍କୁ ଦୁର୍ଲଭ ॥
ହେ କହୁ ବୃନ୍ଦାବନ ଶୋଭା । ଯହିଁ ଗୋବିନ୍ଦ ମନ ଲୋଭା ॥
ନାନା ଉତ୍ସବ କୁତୂହଳେ । ରାସ ଉତ୍ସବ କୃଷ୍ଣ କଲେ ॥
ଗୋପୀଙ୍କ ମୁଖେ ଶ୍ରମ ଜଳ । ମଣ୍ଡିତ ମୁକ୍ତା ପଦ୍ମଫଳ ॥
କୃଷ୍ଣ ଶ୍ରୀମୁଖେ ଘର୍ମ ବିନ୍ଦୁ, । ସୁଧ ସ୍ରବେ କ ଶ୍ୟାମ ଇନ୍ଦୁ,

ଗୋପୀ ଗୋବିନ୍ଦ ମୁଖ ଧ୍ୟାଇ । ଗୋପୀଙ୍କ ଶୃଙ୍ଗାର ଛବି ॥
ଯେ ବସ୍ତ୍ର ନୃତ୍ୟ କରିଥିଲେ । ସେ ସେହି ବସ୍ତ୍ର ନେ ବହିଲେ ॥
ବାମ ହସ୍ତ ଅନ୍ତ ପରିହରି । ନୀଳ ପଟନୀ ପୀତାମ୍ବର ॥
ଶରତ ଚନ୍ଦ୍ରର ଆହ୍ଲାଦ । ସ୍ଥିତ ମରୁତ ମନ୍ଦ ମନ୍ଦ ॥
ଏମନ୍ତେ ହର ଶ୍ରମ ଶାନ୍ତ । ସୁରତେ ଗୋପୀଙ୍କର ମତ ॥
ସୁଦାମ ଲୋଚନଙ୍କୁ ଚାହିଁ । କୃଷ୍ଣଙ୍କୁ ସ୍ନେହ ଦୃଷ୍ଟିର ॥
ଅଞ୍ଚଳ ସଜାଡ଼ିଲେ ବାମା । କୃଷ୍ଣେ ଦେଖାଇ ଭୁଜସୀମା ॥
ଅଳସ ଛଳେ ଟେକି ଭୁଜ । ଉର୍ଦ୍ଧ୍ୱେ କରନ୍ତି ଉରଜ ॥
କୃଷ୍ଣ ଦେଖିଲେ ଭୁଜମୂଳ । ହସି ସମ୍ଭାଳନ୍ତି ଅଞ୍ଚଳ । ୩୦୦ ।
ଏରୂପେ ଭାବ ଅଙ୍ଗଭଙ୍ଗୀ । ସେସବେ ସମୃଦ୍ଧ ରଙ୍ଗୀ ।
ଅବଲମ୍ବନ ଉଦ୍ଦୀପନ । ଅଧୈର୍ଯ୍ୟ ଦେଇଲା ମଦନ ॥
କୃଷ୍ଣ ଗୋପୀଙ୍କ ମନ ଜାଣି । ସଫଳ ମନୋରଥଦାନୀ ॥
କଳପ ତରୁ ପୁଷ୍ପବାସ । ମାଧବେ ମହିମା ବିଶେଷ ॥
ଗୋପୀ ଗୋବିନ୍ଦ ପାନ କରି । ଯେସବେ ଶଙ୍କର ଗଉରୀ ॥
ଉନ୍ମାଦ କ୍ଷଣିକ ଲୋଚନ । କନ୍ଦର୍ପଦର୍ପ ବିମୋଚନ ॥
ରତି ସହିତେ ଯୁବେ ଜାଣି । ନିଷ୍ୟ ହଉବେ ଅନ୍ନ ପୁଣି ॥
ମଦନମଦେ ହୋଇ ହେଲେ । ଗୋପୀଏ ଲୋଡ଼ିଲେ ଭରସା ।
ଯେ କୃଷ୍ଣବାମେ ଯେଉଁ ନାରୀ । ଯେ ଗୋପୀ ଦକ୍ଷିଣେ ଯେ ହରି
ତା ପେଲ ବଳେ କୁଞ୍ଜେ କୁଞ୍ଜେ । ମଜ୍ଜିଲେ ରତି ରସପୁଞ୍ଜେ ।୩୧୦
ବାହ୍ୟ ଅନ୍ତରେ ତହୁଁ ଯେତେ । ମଦନ ମହାଯାଗ ମତେ ॥
ରତି କନ୍ଦର୍ପ ଯାର ଶିଷ୍ୟ । ହେ ବହୁଁ ଜଣିମ ବିଶେଷ ॥
ମେଘେ କି ସ୍ଫୁରିତ ଦାମିନୀ । ହେମ ଜଡ଼ିତ ନୀଳମଣି ॥
ତମାଳତରୁ ପଦ୍ମଲତା । ଶ୍ରୀକୃଷ୍ଣ ଶ୍ରୀ ବ୍ରଜବନିତା ॥

ଚକ୍ଷ୍ୟ ? ଭୂମିରେ ନ ଲଗ୍ନ । ଶୋଭା ଗଉସ୍ୱ ଶଂ ମଥଙ୍ଗ ॥
ପରମଆନନ୍ଦ ପୟୋଧି । ସଙ୍ଗେ ସର୍ବ୍ବଶ୍ରୀ ପ୍ରେମନଦୀ ॥
କଳ୍ପଲତାରେ ବାଞ୍ଛାବୃକ୍ଷ । ଅବୋଧ କହିଲେ ପ୍ରତ୍ୟକ୍ଷ ॥
ଗୋପିକା ଗୋବନର ବାସ୍ତେ । କନ୍ଦର୍ପ କଳା ଶିବ ପ୍ରାପ୍ତେ ॥
ହେମପର୍ବତ ଶୃଙ୍ଗ ମଧ୍ୟେ । ସର୍ବ୍ବଶ୍ରୀ ଚନ୍ଦ୍ର କଲେ ଉଦେ ॥
ବନ୍ଧୁଳି ବିମ୍ବଫଳେ ଜିନ । ଦାଡ଼ିମ୍ବ ଦେଖି ଦନ୍ତ ଛଇ ॥
ଏବେ କନକ କମ୍ବୁ ଓଷ୍ଠ । ଶିଖରେ ସଗେଳ ପ୍ରଦୀପ୍ତି ॥
ଶେ ଭିତ ଏବେ ଚନ୍ଦ୍ରଗୁପ୍ତ । କନ୍ଦର୍ପକୂପର ପ୍ରତାପ ॥
ମାଳନ ଅଗେ ନ ମଞ୍ଜୀର । ମହିମା କହେ ମଦନର ॥
ଗୋପୀ ଚରମରଙ୍ଗ ମେଣି । ଦସ୍ତୁରଣ ଶୋଭା ଦଶି ॥
ଅଧର ଲୋଚନର ଗନ୍ଧ । ଭୂଷଣ ଓଳମ୍ବ ପୀରଦ ॥
ଏମନ୍ତ ଜବର୍ଦ୍ଦ ନୂପୁର । କିଙ୍କିଣୀ ଶବଦ ସଙ୍ଗର ॥
ଇତଥ ଦପସ୍ତର ଷନ । ସତ୍ତ୍ୱର ରସଗ୍ରୋଗୀ ଗ୍ୱନ ॥
ଦେଖସ୍ତ ବ୍ୟପଲେ ଲୁବଙ୍ଗୀ । ଉନ୍ମତ୍ତ ନୃତ୍ୟ ଲୀଳାବଙ୍ଗୀ ॥
ସଟ୍ଟପ ପୁଣ ସତ୍ତ୍ୱଭନ । ଦ ଏ ଗୁପଇ ଅରବନ୍ଦ ॥
ବନ୍ଦ୍ର ପ୍ରକାଶ କ୍ଷମଜଳ । ମୁକ୍ତିର୍ମଣ୍ଡିର ଶଫଳ । ୩୭୦
ମଦଳଗଜ ମତ୍ତିଭରେ । ମେଘ ବରଷେ ମେରୁ ପରେ ॥
ସିଂହକୁ ସାସ୍ୱିବ ଜାଣି । ସିଂହ ଉପରେ କଳାଫଣୀ ॥
ଗାଞ୍ଛ ଖଞ୍ଜନ ମତ୍ତ ଅଛ । ଛିଡ଼ନ୍ତି ପୁଷ୍ପମାଳ ଡାଳ୍ର ॥
ଭାଗ ନଟ୍ଟଟେ ଦେଖି ଚନ୍ଦ୍ର । ଡାକର ସ୍ତବେ ନ ସ୍ୱଥ ବନ୍ଦ୍ର ॥
ଉତ୍ପାର କଲେ ମଲ୍ଲୀଫଳ । ଭ ଏ ଅଟଇ ଅକଳୁଳ ॥
ମଦନ ଶୋଭା କ୍ଷମଜଳେ । ଜାଳର ବନ ନ ଦମଲେ ॥
କନକବନ ଲୁମ୍ବ କେଲ । ଅମୃତ ଅଙ୍କୁଶେ ଲଗାଇ ॥

କନ୍ଦର୍ପ କୁବେର ଭଣ୍ଡାର । ହରନ୍ତି ଉଦ୍ଧରନ୍ତି କୂର ॥
ବନ ଷୋଡ଼ଶ ଚତୁର୍ଗୁଣ । ଏ ବନ୍ଧ ହୋଇଲା ସମ୍ପୂର୍ଣ୍ଣ ॥
ଜନଙ୍କେ ମଦନ ଅବଧି । ପୁଣି ହୋଇଲେ ଯଥାବିଧି ॥
ଲକ୍ଷ୍ମିର ଭଣ୍ଡାର ବସଣି । କନ୍ଦର୍ପ ଫଳାଇଛି ଜାଣି ॥
ଛୁଡ଼ିଲା ପୁଷ୍ପ ଧନୁର୍ଗୁଣ । ସଭୟେ ଗ୍ରାଜିଲା ମଦନ ॥
ବସନ୍ତ ବଳେ ଗଲା ଆସି । ତା ନିଜ ରାଜ୍ୟରେ ପ୍ରବେଶି ॥
ଋତୁରାଜା ସଙ୍ଗେ ମିଳି । ଖେଳନ୍ତେ କୃଷ୍ଣ ବ୍ରଜବାଳୀ ॥
ସନ୍ତୋଷେ ମନୋଇଥେ ପୂର । ବୈକୁଣ୍ଠ ସମ୍ପଦ ପାସୋର ॥
ବଂଶୀ ବର୍ଜିତ ଯାଗାପୂଲେ । ସୁଖଦ ସେରପଦ୍ ଭଲେ ॥
ସେ କୂଟ ଜଳଯନ୍ତ୍ର ଭଲେ । ବାସଣା ହୁଲାଇ ବସିଲେ ॥
ନବଧ କୁସୁମ ସୁବାସ । ଝରଇ ସୁମରନ୍ଦ ରସ ॥
ତହିଂ ସବୁକେ ଶ୍ରମ ଯାନ୍ତି । ସର୍ବଦା ବସନ୍ତ ବହନ୍ତି ॥
ଯମୁନା ଜଳ ବନଫୁଲ । ସମୀର ସୁଗନ୍ଧ ଶୀତଳ । ୩୫୦ ॥
ଜନେ ପ୍ରାପ୍ୟେ ବାଳକୁନ୍ଦ । ସମ୍ମୁଖେ କମଳ କୁମୁଦ ॥
ସେ କୁବଳୟେ କୋକନଦେ । ଶରଦ ପୂର୍ଣ୍ଣଚନ୍ଦ୍ର ଉଦେ ॥
ଷଡ଼ଋତୁର ଫଳ ଫୁଲ । ସେ ବନେ ଅଛନ୍ତି ସକଳ ॥
ହଂସ ହଂସାଳୀ ଚକ୍ରବାକ । କେକୀ କୋକିଳ ଶାରୀ ଶୁକ ॥
ନାନା ସୁସ୍ୱନିଜ ଶୁଭବାଣୀ । ବଢ଼ଇ ରସ ରବ ଶୁଣି ॥
ସବୁକେ ଚନ୍ଦ୍ରଚୁମ୍ବିତଲେ । ବାଞ୍ଛିତ ସହାଦ୍ରବ୍ୟ ମିଳେ ॥
ପଣା ପଇଡ଼ ଇକ୍ଷୁ ଦଣ୍ଡ । ଯେ ଦୁଗ୍ଧ ସର ନିଶ ଖଣ୍ଡ ॥
ଦାଡ଼ମ୍ବ ପନସ ରସାଳ । ଯେ ବନଫଳ କନ୍ଦମୂଳ ॥
ଅମୃତଶାଣି ରମ୍ଭା ପକ୍ୱ । ଏବଷ୍ଟ ଶୀତଳ ଅତେବ ॥
କର୍ପୂର ଚନ୍ଦନ ତାମ୍ବୂଳ । ବସନ ଭୂଷଣ ଅମୂଲ୍ୟ ॥୩୬୦॥

ଯେଣୀ ଗୋବିନ୍ଦ ସ୍ନେହ ବଶ । ସକଳ ମନୋରଥ ପୂର ॥
କୁସୁମଶେଯେ ହୃଦେ ଶୋଇ । ଏକାନ୍ତେ ଯୋଡ଼ି ହୋଇ ॥
ଅଧର ଉରୁ ପାଦ ପାଣି । ଜଡ଼ିତ ଗୋବିନ୍ଦ ଗୋପିନୀ ॥
କୃଷ୍ଣଚନ୍ଦ୍ରର ମାୟା ଦାସୀ । ରଇଣ ଗୁପ୍ତ ଛନ୍ତି ବସି ॥
ଦେଖ ପୁଷ୍ପ ଧରଣୀ ବାହାର । ଦେଖ ବୀଣାସଙ୍ଗୀତ ବଜାଇ ॥
ଶୋଳସହସ୍ର କୁଞ୍ଜଘରେ । ଗୋବିନ୍ଦ ଗୋପିକା କେଳି କରେ ॥
ଯେ ଭାବେ ଯେଝେ ଶୋଇଛନ୍ତି । ସେରୂପେ ସ୍ୱପନେ ଦେଖନ୍ତି ॥
ନିକୁଞ୍ଜେ ଗୋବିନ୍ଦ ଗୋପିକା । ଦ୍ୱିତୀୟ ନାହିଁ ସପତଣୀ ॥
ଏ ସୁଖ କମଳାର ନାହିଁ । ଶାରଦା ସଙ୍ଗ ଛଡ଼ା ନାହିଁ ॥
ଏ ମହା ସୁଖର ଶୟନେ । ଗୋପୀଗୋବିନ୍ଦ ବୃନ୍ଦାବନେ ॥
ସୁରସ ପ୍ରେମରସେ ରସ । ବ୍ରହ୍ମରଜନୀ କଲେ ଶେଷ ॥
ଡାକିଲ ତାମ୍ରଚୂଡ଼ବାଣୀ । ଗହିଲ ଖଗଗଣ ଶୁଣି ॥
ଚନ୍ଦ୍ରକୁ ଦେଖି ଶୋଭା ହୀନ । ମୁଦ୍ରିତ କୈରବ ଗଣ ॥
ମଳିନ କୁମୁଦିନୀକୁଳ । ଚକୋର ଲୋଚନେ ସଜଳ ॥
ପୂର୍ବେ ଅରୁଣ ଅସ୍ତ ଚୈତ । ଅନନ୍ତ ନାଦ ଚକ୍ରବାକୀ ॥
ଅମ୍ବୁଜ ଦେଖି ପ୍ରହସିତ । ଉଡ଼ିଲେ ମଧୁକର ମତ୍ତ ॥
ବାଉଜ ବହିଲ ସମୀର । ଶୀତଳ ବହଳ ସୁଧୀର ॥
ଗୋପୀଙ୍କ କଣ୍ଠ ମୁକ୍ତାମାଳ । ଲାଗିଲା ଅତି ସୁଶୀତଳ ॥
ପଶ୍ଚିମ ଦିଗେ ଚନ୍ଦ୍ର ଗଲେ । ଗୋପୀ ଗୋବିନ୍ଦ ନିଦ୍ରାବେଶେ ॥
ଜାଗ୍ରତ ସଶୀତ ସମୀର । ବିଶେଷେ ଗୋବିନ୍ଦ ବୋଲଇ ॥
ମଧୁର ନିଦ୍ରା ଲଭି ଶେଷେ । ଚକ୍ଷୁ ନ ଫିଟେ ଅଳସେ ॥
କୃଷ୍ଣଙ୍କ ଉଡ଼ନ୍ତି ହୃଦର । ରଜନୀ ଅଛୁ ବୋ ଅପାର ॥
ବୋଲନ୍ତି କ ଛାଡ଼ନ୍ତି କୋଳ । ଅଳସ ନିଦ୍ରା ପ୍ରେମ ଭୋଳ ॥

ଶୁଣିହିଁ କୃଷ୍ଣ ଚନ୍ଦ୍ରେ ରହ । ବୋଇଲେ ସଖି ସଙ୍ଗ ଯାହ ।
ଖଞ୍ଜନ ବନ ବନ୍ଧଶିଳେ । ଗୋବିନ୍ଦ ଲୋଚନ ଯେଉଁଳେ ॥
ଗୋପିକା ସମ୍ଭ୍ରମ ବସନ । ଲୁଣ୍ଠନ ଜାନୁ ଯଉବନ ।
ଅଳପ ଲଜ୍ଜା ହୋଇ ରସ । ସୁମର ସଖି ଯିବା ଦଶ ।
କୃଷ୍ଣର ବଞ୍ଚାଇ ଲୋଚନ । ଦେଖନ୍ତି ଉଭଚନ୍ଦ୍ରାନନ ।
ତାମ୍ବୁଳ ବୋଲ ଦନ୍ତସାର । ଅରୁଣ ଅଗ୍ର ସେ ଶୋଭର ।
ହସି ବୋଲନ୍ତି ଅଧୋମୁଖେ । ନୟନ ଶୋଭି ଧାରା ରେଖେ ।
ସ୍ନାନ ହେଲେ ଅଙ୍ଗନରେ । ଅରୁଣ ଶାଢ଼ୀ ସ୍ୱାମୀ ହେଲେ ।
ଯାଇଲେ ନ ହୁଇ ଗ୍ରନ୍ଥରେ । ଏମନ୍ତ ବସ୍ତ୍ରରଲେ ଛନ୍ଦେ ।
ଏ ନୋହେ ଗଜମ କ୍ରୀଡ଼ାର । ସ୍ୱଯଶ ଲୁଚ ଗାଉଁଚର ।
ମର୍ଦ୍ଦନେ ଚନ୍ଦନ କର୍ପୂର । ପାଣ୍ଡୁର ଦଣ୍ଡିହୁ ଶରୀର ।
ଏ କ ସେ ଯୁଦ୍ଧେ ଥିଲେ ପକ୍ଷେ । ବେଣୁଟି ବାଜିଲେ ପ୍ରତ୍ୟକ୍ଷେ ।
ହଟୀ ଭରମ ଆଗେ ଥିଲେ । ବେଣୁଟି ପାଟଶାଢ଼ୀ ଦେଲେ ।
ସେ ଭୂଜଲତା ଯୁବତୀଳେ । ସ୍ୱର୍ଗ ଦଗରୁ ଏ ବେଢ଼ିଲେ ।
ମୃଦୁ କଙ୍କଣ ଚୂଡ଼ୀ ଚାଡ଼ି । ଏ ସେ ଏହାଙ୍କୁ ନୋହେ ବଡ଼ି ।
ଚରଣଯୁଗ ଅଗଣର । ପାଇଲେ ସୁବର୍ଣ୍ଣ ନୂପୁର ।
ଅଧର ସମ୍ମୁଖେ ମିଶିଲେ । ବେଣୁଟି ତାମ୍ବୁଳ ପାଇଲେ ।
ଜ୍ଞାନେ ଲକ୍ଷିତ ଲୋଚନ । ବେଣୁଟି ହଳଦ୍ଦ ଭୂଷଣ । ୪୦୧ ।
କଣ୍ଠି ସହିତେ ଫୁଲହାର । ତାଙ୍କ ଦେବାର ଉଚିତ ।
ସୁନ୍ଦର କୃଷ୍ଣ ଉଭ ଦେହ । ପ୍ରତି ଅଙ୍ଗକୁ ପ୍ରତିଷ୍ଠିତ ।
ଧନ୍ୟଟି ଏ ଜନ୍ମ ଜୀବନ । ସୁଫଳ ରୂପ ଯଉବନ ।
ଏ ରସ ଅସ୍ୱାଦନ ମନେ । କୃଷ୍ଣଙ୍କ ସ୍ୱହିଁ କେଶଦୋଳେଣ ।
ଗୋବିନ୍ଦ ଅଙ୍ଗେ ରଦ୍ଧଚନ୍ଦ୍ର । ଗୋପୀ କରନ୍ତି ଦରଶନ ।

ନେତ୍ର ତାମ୍ବୂଳ ବୋଳଯୁକ୍ତ । ଅଧରେ ଅଞ୍ଜନ ଅଙ୍କିତ ॥
କପୋଳେ ଅଳକା ଅରୁଣ । ଦ୍ରବିଛି ସ୍ମରଲା ମନ ॥
କୁଚ କୁଙ୍କୁମ ଲୁପ୍ତ ଉରେ । ପଶ୍ମିଗ ଣ ଲଗ୍ନ ଦେହରେ ॥
ନଖ ସ୍ମରେ ଉଲଗ୍ନେ । ଦଶନ ସଞ୍ଚ ଗଣ୍ଡସ୍ଥଳେ ॥
ବାହ୍ୟର ରତ୍ନରାଜ ଅଙ୍ଗେ । ବେଶ ବସନ ବଳ ଭଙ୍ଗେ ॥
ସହଜେ ଢଳଢଳ ଲୋଚନ । ଉନ୍ନିଦ୍ରେ ଅଧିକ ଅରୁଣ ॥
ଅଳସେ ହୋଉଛନ୍ତି ଘୂର୍ଣ୍ଣିତ । ତାମ୍ବୂଳବୋଳେ ସୁଶୋଭିତ ॥
ଧୀର ସମୀରେ ପଦ୍ମଫୁଲ । ଯେସନେ ହୁଏ ଟଳ ଟଳ ॥
ସ୍ମରନ୍ତି ଗୋପୀ ଗୋପପତି । ରଣ ବାହୁଡ଼ା ଗଜପତି ॥
ନିକୁଞ୍ଜୁ ହୋଇଲେ ବାହାର । ଯେସନେ ନୂଆ କନ୍ୟା ବର ॥
ମଟୁକଶଯ୍ୟାରେ ଥିଲେ ଶୋଇ । ଉଠିଲେ ଲାଜ ଲାଜ ହୋଇ ॥
ରତି କନ୍ଦର୍ପ ଶୋଭ୍ରା ଯେନ । ବଳୟ ଶୋଭନ ଗୋପିକା ॥
କଦମ୍ବ ଚମ୍ପକ ବକୁଳ । ମାଧବୀ ମାଳତୀ ଗହଳ ॥
ଏ ବୃକ୍ଷଛାୟା ବନ ଗଲେ । ଇଙ୍ଗନୀ ଯାହିଁ ହୋ ବୋଇଲେ ॥
ପାଲଟ ନୀଳ ପୀତାମ୍ବର । ହୋଇଛି ଚିହ୍ନିଲେ ସେଠାର ॥
ନୀଳ ବସନ ବେଣୁପାଣି । ବସନ୍ତି ବିଛି ଗୋପିକା ॥
ଲକ୍ଷିଲେ ହୋଇ ହସ ହସ । ଲେଉଟି କୁଞ୍ଜେ ପ୍ରବେଶ ॥
ଅର୍ଦ୍ଧେ ବସନ କୃଷ୍ଣ ଯେନ । ଗୋପୀ ଆଡ଼କୁ ପିଠି ଦେଇ ॥
ଅଞ୍ଚଳ ପିନ୍ଧନ୍ତି ବଦନ । ଆଉ ଅଞ୍ଚଳ ଶୋଭନାଙ୍ଗ ॥
ପିନ୍ଧି ପାଇଛି ପୀତାମ୍ବର । ଅଞ୍ଚଳ ଦେଲା କୃଷ୍ଣକର ॥
ପୀତ ଅଞ୍ଚଳ କରଯୁଗେ । ନୀଳ-ବସନ କଟିଭାଗେ ॥
ଗୋପିକା ନୀଳବାସ ନାଭି । ଉରରେ ପୀତପଟ ଅଛି ॥
ଗୋବିନ୍ଦ ପୀତାମ୍ବର ଛାଡ଼ି । ମୁଦିଲ କଲେ ନୀଳଶାଢ଼ୀ ॥

ଗୋପିକା ରହସ୍ୟ ରଙ୍ଗିଣୀ । ରଙ୍ଗେଣ ନେଲେ ଶାଢ଼ୀ ଟାଣି ॥
ତର୍କେ ହାରଲେ ବେଣୁପାଣି । କହି ସେ ହସଇ ଗୋପିକା ॥
ଖେଞ୍ଚିଲେ ନୀଳ ପୀତାମ୍ବର । ଉତ୍ତର ବାସ ଯେ ଯାହାର ॥
ବସନ ପାଲଟ ରହସ୍ୟ । ଅନନ୍ଦ ମିଶା ମନ୍ଦ ହାସ୍ୟ ॥
ହସନ୍ତି ଗୋବିନ୍ଦ ଗୋପିକା । ପ୍ରୀତି କରନ୍ତେ ସେବାସେବକ ॥
ମେଲାଣି ହେମ ଅଲଙ୍କାର । ଚାଲିଲେ ଘରନ୍ତରେ ଦାର ॥
ଷୋଳସହସ୍ର ଗୋପନାରୀ । ଏରୂପେ ଭଜିଲେ ଶ୍ରୀହରି ॥
ଏହାଙ୍କୁ ଅନ୍ତର ଲୁଣ୍ଠନ । ପ୍ରବେଶ ଦ୍ୱାରାପୁରେ ଯାଇ ॥
କରନ୍ତି ନିଜ ଆଚରଣ । କୃଷ୍ଣଚରଣେ ଦେଇ ମନ ॥
ଯେ ବନ ବେଗେ ବେଗେ ଯାଇ । ଶ୍ରୀ ବଲଭଦ୍ରପୁରେ ଶୋଇ ॥
ପ୍ରଭାତୁଁ ଆସି ସଖା ବୃନ୍ଦ । ଡାକନ୍ତି ଉଠ ହୋ ଗୋବିନ୍ଦ ॥
ଚୋରାଇ ଗୋଗୋଷ୍ଠେ ସେବଯିବୁଁ । ଗାଈ ଦୋହନ ଦିଣଇବୁଁ ॥
ତା ଶୁଣି ଉଠିଲେ ଗୋବିନ୍ଦ । ଦୃଷ୍ଟିର ଦେଖ ଅରବିନ୍ଦ ॥
ଦର୍ଶନ କଲେ ଗୋଷ୍ଠପୁରେ । ସ୍ୱଜନେ ଲସ୍ୟେ କର ଚରୁ ॥
ସେ ନନ୍ଦନନ୍ଦନ ଚରଣେ । କହ ଭୂପତି ଭାବେ ଭଣେ ॥
ଏ ଗୀତ ପ୍ରେମପଞ୍ଚାମୃତ । ଭକ୍ତି ବିନୋଦ ଭାଗବତ ॥
ଯା ମନ ଏ ରସେ ରସଇ । ତା ହୃଦେ ପ୍ରେମ ପ୍ରକାଶଇ ॥

ଇତି ଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତି ବିନୋଦ ଭାଗବତେ ମନ ଶୁକ ସଂହିତ ସମ୍ବାଦେ ରାସଲୀଳା କଥନେ ନାମ ନବମୋଽଧ୍ୟାୟଃ ॥

---

## ଦଶମ ଅଧ୍ୟାୟ ।

ଶୁକ ବୋଲନ୍ତି ମନ ଶୁଣ । ଏ ଶ୍ରୀ ଭାଗବତ ପୁରାଣ ॥
ବେଦାଦି ଶ୍ରୁତିକଥାଙ୍କର । ଏ ଅର୍ଥ ବଚନ ବକ୍ତାର ॥

ଯେ ସ୍ତବେ କଲେ ପଦେଶୋସ୍ତବ । ସବୁ କହିଲେ ଶୁକଦେବ ।
ମନ କରନ ତାହା ଶୁଣି । ସେ ମହାତ୍ମଜା ମନେ ଗୁଣି ॥
ସାଧନ କର ସେହି ମତ । କୃଷ୍ଣଙ୍କୁ ଲଭିଲା ହିତ ।
ଗୁରୁବଚନ ଶୁଣି ଘେନି । ଛେଦିଲା କର୍ମ ପାଶ ତେଣି ।
ସେ କର୍ମ ପାଶ ବଳଥିର । ଶୁଣ ତୁ ଏଥିର ବିସ୍ତର ॥
ବ୍ରହ୍ମାଦି ବିଷ୍ଣୁ ମହାଦେବ । କର୍ମକୁ କେ ଆନ କହିବ ।
ବ୍ରହ୍ମା ଯେ ସୃଷ୍ଟି କରୁଥାନ୍ତି । ଆୟୁଷ ପୂରଲେ ମରନ୍ତି ॥
ପୁଣି ହିଁ କର୍ମ ଅନୁସାରେ । ଭ୍ରମନ୍ତି ଏ ମାୟାସଂସାରେ ॥୧୦॥
ରୁଦ୍ର ଯେ ବ୍ରହ୍ମହତ୍ୟା କର । ବ୍ରହ୍ମ କପୋଲ କରେ ଧର ॥
ଅନେକ ତୀର୍ଥେ ତପ କଲେ । କପାଳୀ ନାମ ବୋଲାଇଲେ ।
ସେ ବ୍ରହ୍ମବଧ କର୍ମ ଘେନି । ଶ୍ମଶାନବାସୀ ଶୂଳପାଣି ।
ବିଷ୍ଣୁ ଯେ ରାମ ଅବତାରେ । ଆପଣେ ବଧିଲେ ବାନରେ ।
ମର୍କଟ ପୁଷ୍ଟ ସେ ବାନର । ବନ୍ଦିଲା ଶ୍ରୀପଦ୍ମପାଦର ॥
ବାନର ପ୍ରଭୁବଧେ ହିର । ଅପଣେ ଭଲ ଭ୍ୟାଗ କର ॥
ମାଙ୍କଡ଼ ମାଂସ ନେଉଁଥିର । ବିଷ୍ଣୁଙ୍କୁ ନ ଗଲାଟି ପାଇ ।
ଦଶରଥର କର୍ମେ ଥିଲା । ପୁତ୍ର ନ ଦେଖି ପ୍ରାଣ ଗଲା ।
ଦୁର୍ବର୍ଣ୍ଣ କର୍ମଫଳ ବଳେ । ଆୟୁଷ ଥାଉଁ ଥାଉଁ ମଲେ ।
ଶ୍ରୀରାମ ତାହାଙ୍କର ସୁତ । ସେ କର୍ମ ନ କଲେ ଖଣ୍ଡିତ ।
ସୀତାଙ୍କ କର୍ମର ଘଟନ । ସ୍ୱେଚ୍ଛାର ନେଲାଟି ରାବଣ ।
ରାମ ସୀତାଙ୍କ ପ୍ରାଣନାଥ । ବିସ୍ମ ହୋଇଲେ ଧନୁ ହାତ ।
ଅସୁରଘରେ ବନ୍ଦୀ ହେଲେ । ସେ କର୍ମ କପାଁ ନ ଖଣ୍ଡିଲେ ।
ଇନ୍ଦ୍ର ଯେ ଦୁଷ୍କୃତ କର । ସହସ୍ରେ ଯୋନି ଦେହେ ଧର ।
ଦେବତାମାନଙ୍କର ରାଜୁ । କପାଁ ନ କଲେ କର୍ମ ଖଣ୍ଡୁ ।

ଧର୍ମେ ଚଳନ୍ତି ଚନ୍ଦ୍ରମାରଂ । ସେ ତୀର୍ଥଯାତ୍ରା ଭ୍ରମର ।
ଲକ୍ଷ୍ମୀର ସହୋଦର ଗ୍ରହ । ବୃଷ୍ଟିର ଖଳା ସେ ଅଟଇ ।
ଶଙ୍କରଶିରେ ତାର ବାସ । ସେ ଧର୍ମ ନ ଗଲେ ତା ନାଶ ।
ବସୁଦେବ ଯେ ବନ୍ଦୀଘରେ । ରହିଲେ ଦେବକୀ ସଙ୍ଗରେ ।
ତାହାଙ୍କ ଧର୍ମେ ପୀତବାସ । ରହିଲେ ପୂର୍ଣ୍ଣ ଦଶମାସ । ୩୦ ।
ଜନ୍ମିଲେ ଜଗେ ଦରଶନ । ଯେ ନାମ ଅନନ୍ତ ଭଞ୍ଜନ ।
ଥୋଇଲେ ଆଣି ଗୋପପୁରେ । ପୁଣିହିଁ ବନ୍ଦୀ ବନ୍ଧନରେ ।
ତାହାଙ୍କ ନିଜ ଧର୍ମ ଦୋଷ । ଗୋବିନ୍ଦ ଗଲେ ନ ତା ନାଶ ।
ପଣ୍ଡବେ ଦୁର୍ଯ୍ୟୋଧନ ବଳେ । ସର୍ବସ୍ୱ ପଣରେ ହାରିଲେ ।
ତାହାଙ୍କୁ ବନବାସେ ଦେଇ । ସମ୍ପଦ ବଂଶକୁ ହରାଇ ।
ଶ୍ରୀ ବଳଭଦ୍ର ଗୁରୁ ଭାଇ । ସେ ଧର୍ମ ନ ଗଲେକ ପାଇ ।
ଭାରତଯୁଦ୍ଧେ ଏକାବେଳେ । ଶତେକ ପୁତ୍ର ମୃତ ହେଲେ ।
ଧୃତରାଷ୍ଟ୍ରର ଧର୍ମେ ଥିଲା । ଶତେକ ଜନ୍ମ ଭୋଗ ହେଲା ।
ବିଷ୍ଣୁ ଅସୁର ରୂପ ଧରି । ହରିଲେ ଜଳନ୍ଧରଜାଣି ।
ସେ ପତିବ୍ରତା ଧର୍ମ ଦୋଷ । ବିଷ୍ଣୁଙ୍କୁ ଦେଲା ଯେଉଁ ଶାପ ।
ତୁ ରେ ପଥର ରୂପ ହବ । ଦୋଷାନୁସାରେ ଦଣ୍ଡ ସହ ।
ମୋ ସ୍ୱାମୀ ବୈକୁଣ୍ଠ ଦେଉ । ତୋ ଦେହ ଜାତି ସେ ପଡାଉ ।
ସେ ଶିଳା ନବଘନ ଶ୍ୟାମ । ଯାହାକୁ ବୋଲି ଶାଳଗ୍ରାମ ।
ସେ ପତିବ୍ରତା ସେହି ବେଶେ । ତୁଳସୀରୂପେ ଶିରେ ବସେ ।
କୃଷ୍ଣ ଯେ ଯୁଦ୍ଧ କରୁଥିଲେ । କାଳଯବନକୁ ଜାଳିଲେ ।
ପଳାଇ ପଶିଲେ ସେ ଯାଇ । ଶୋଇଛି ମୁଚୁକୁନ୍ଦ ଯହିଁ ।
କୃଷ୍ଣ ଦୋଷଡ଼ା ପୀତାମ୍ବର । ଘୋଡ଼ାଇଦେଲେ ତା ଉପର ।
ତାହାକୁ ଦେବତାଙ୍କ ବର । ସେ ନିଦ୍ରା ଭାଙ୍ଗିବ ତୋହର ।

ଅବଲୋକନେ ଜଳିଯିବ । ଅନ୍ୟଥା ଏ ବାକ୍ୟ ନୋହିବ ॥
ତା ପରେ ପୀତବାସ ଦେଇ । ଲୁଚିଲେ ବ୍ରହ୍ମାଣ୍ଡ ଗୋସାଇଁ ॥
ଅସୁର ଥିଲା ଯେ ଗୋଡ଼ାଇ । ପୀତବସନ ଚକ୍ଷୁ ପାଇ ॥
ଜାଣିଲ ଏହି ଚକ୍ରଧର । ପାଦେକ ଦେଲା ସେ ପ୍ରହାର ॥
ରାଜାର ନିଦା ଭଗ୍ନ ହେଲା । ଅବଲୋକନେ ଜଳିଗଲା ॥
କୃଷ୍ଣର କପଟ ଏ କର୍ମ । ଏତ ନୁହଇ କ୍ଷତ୍ରିଧର୍ମ ॥
ସେ କର୍ମ ଛାଡ଼ିଦେଲ ସହି । କଳାପାହାଡ଼ ନାମ ବହି ॥
ଘୋଷିଲା ଅସି ମହାକୋପେ । ଭେଟିଲା ଦାରୁବ୍ରହ୍ମରୂପେ ॥
ନୀଳାଚଳରୁ ଧରନେଲା । ଅଗ୍ନିକେ ବାନ୍ଧିଣ ବଳିଲା ॥
ଶ୍ରୀଅଙ୍ଗେ ହେଲା ଅଗ୍ନି ଜାଳ । କର୍ମଟି ଏତେ ମହାବଳୀ ॥
ଦଗ୍ଧ ନ ଉତୁରିଲେ ଯହିଁ । ଆଜ ହରିଲ ଯିବ କାହିଁ ॥
ଶ୍ରୀରାମ ଏକନାଶିତ୍ରେ । ରହିଲେ ଅତି ଶୁଦ୍ଧଚରେ ॥
କୃଷ୍ଣସ୍ୱରୂପେ ତ୍ରେତାଫଳେ । ଅନେକ ଦାଶୀ ଭୋଗ କଲେ ॥
ପରଶୁରାମରୂପେ ହରି । ଅପାର କ୍ଷତ୍ରି ବଧ କରି ॥
ତାହାଙ୍କ ପିତାଶତ୍ରୁ ଏତ । ସେ ପୁଣି ବଧିଲେ ଅନେକ ॥
ଅତି ନିର୍ଦ୍ଦୟପଣ କରି । ଗର୍ଭିଣୀ ଗର୍ଭ ଚିର ମାରି ॥
କ୍ଷତ୍ରିଯୁବଂଶ କଲେ ନାଶ । ଏରୂପେ ବଢ଼ିଲା ତାମସ ॥
ସେ ପାପଠୁଲ ହୋଇଥିଲା । କୃଷ୍ଣବଂଶରେ ପ୍ରକାଶିଲା ॥
ଛପନକୋଟି ଯଦୁବଳ । କୃଷ୍ଣର ପୁତ୍ର ନାତି ଠୁଳ ॥
ଏତା ସ୍ଥଳେ ଗଲେ ନାଶ । ସେ କ୍ଷତ୍ରି ବଧ କର୍ମ ଦୋଷ ॥
ସ୍ୱଧର୍ମୀ ବଳୀ ରାଜାଙ୍କର । ଦ୍ୱାର ଜଗିଲେ ଚକ୍ରଧର ॥
ଦେଖ ତୁ ସ୍ୱଧର୍ମ ମହିମା । ବାନ୍ଦର ହେବେ କଲେ ବ୍ରହ୍ମା ।
ଅତି ସ୍ୱଧର୍ମ ବୁଝି ତୁହି । ଅତହିଁ ଉଚ୍ଚେ ଧ୍ରୁବ ରହି ॥

ସ୍ୱକର୍ମ ଯେବେ ଦୃଢ଼ କର । ଅନେକ ବିପଦରୁ ତର ।
ଭକ୍ତ ହୋଇଲେ ପ୍ରହଲାଦ । ପାଇଲେ ବୈକୁଣ୍ଠ ସମ୍ପଦ ।
କର୍ମେଟି ସ୍ୱର୍ଗଭୋଗ ହୋଇ । କର୍ମେଟି ନରକେ ପଡ଼ଇ ।
ଏଣୁ ଏ ଶୁଭାଶୁଭ କର୍ମେ । ଏ ପ୍ରାଣୀ ଭୋଗ କର କ୍ରମେ ।
ଅକ୍ଷୟ କର୍ମ ହୁଇ ଜାଣ । ଭୋଗ କରବାଟି ପ୍ରମାଣ ।
କେବେହେଁ ନୁହନ୍ତି ସେ କ୍ଷୟେ । ଅକ୍ଷୟ ଭୋଗ ହେବା ଯାଏ ।
ଗୋବଧ ନାମ ଅନଳର । ଦହିବା ମହାପାପ ଘୋର ।
ଦହନ ଅନ୍ତେ ଭସ୍ମ ହେବ । ଭସ୍ମକୁ କେ ଦହି ପାରବ ।
ଉଡ଼ାଇ ପୁଣ୍ୟ ପବନରେ । ବୁଡ଼ାଇ ଦେବ ଧର୍ମନୀରେ ।
ସେ ଜଳେ ସଡ଼ି ହେବ ପଙ୍କ । ପାରାରେ ରହିବ ନିଃଶଙ୍କ ।
ପଥର ପ୍ରାୟେ ଲୁଚିଥିବ । ଅବଶ୍ୟ କାଳେ ପ୍ରକାଶିବ ।
ଶଙ୍କର କାମ ଭସ୍ମ କଲେ । ସେ ପୁଣି କାଳେ ଅଙ୍କୁରିଲେ ।
ଏରୂପେ କର୍ମ ଭସ୍ମ ହୋଇ । ତା ବେଳ କାଳେ ଅଙ୍କୁରଇ ।
ଯାପେ ପାପିଙ୍କ ପ୍ରାୟଶ୍ଚିତ୍ତ । ମଧ୍ୟରେ ମହାଜନ ମତ ।
ଶାରଦ ଶାସ୍ତ୍ର ଧରେଥାଇ । ମଧ୍ୟେ ମହାଜନ କହଇ ।
ନିବର୍ତ୍ତି ଉଦେ କନ୍ତୁଦଳ । ପୁଣି ଧରବାଟି ପ୍ରମାଣ ।
ଏରୂପେ ପାପ ପ୍ରାଣିଙ୍କର । ଶାସ୍ତ୍ର ଶାରଦ ଯେ ପ୍ରକାର ।
ଜନ୍ମଜନ୍ମାନ୍ତେ ଲାଗିଥାଇ । ତା ବୋଧ ପାଇଲେ ଛାଡ଼ଇ ।
ଏକଥା ବୁଝି ଦୃଢ଼ କର । କେ ପାରେ କର୍ମକ୍ଷୟ କର ।
ଅକ୍ଷୟ କର୍ମ ପାପ ପୁଣ୍ୟ । ବିନାଶ ହୋଇବେ ଭୋଗଶୂନ୍ୟ ।
ଯେ ନାନା ପୁଣ୍ୟକର୍ମ କରେ । ସେ ପାଟରିକି ବନ୍ଧନରେ ।
ଯେ ପାପକର୍ମେ ଅଛୁ ଜଡ଼ । ବନ୍ଧନ ସେ ଚର୍ମ ଦଉଡ଼ି ।
ସୁନା ଶିକୁଳି ତାର ପାଦେ । ଯେ ଲୋହ ଶିକୁଳି ପ୍ରସାଦେ ।

ଏ ପାପ ପୁଣ୍ୟ ମିଶି ଯାଇ । ଯୋଡ଼ା ଶିକୁଳି ତା ପରାଇ ।
କରନ୍ତି କର୍ମକ୍ଷେତ୍ରେ ସିଧ । ମାତ୍ରର ପ୍ରାଣେ ହୋନ୍ତି ବଧ ।
ମଧୁରସରେ ଯାଇ ପଡ଼ି । କଟୁରଇଲ ମଧ୍ୟେ ବୁଡ଼ି ।
ସ୍ୱର୍ଗ ନରକ ଆଶ୍ରୟ ତ । ସଂସାରେ ଦୁଃଖ ସୁଖ ଯୁକ୍ତ ।
ପଣ୍ଡିତ ମୂର୍ଖ ହୋଇଥାଇ । ନାନାବିଧ ଜନ୍ତୁ ଜନ୍ମ ହୋଇ ॥
ପୁଣ୍ୟାତ୍ମା ପାପୀ ଦୁହିଙ୍କର । ସ୍ୱର୍ଗ ନରକ ବନ୍ଧଘର । ୧୦୦ ॥
ସ୍ୱର୍ଗରୁ ନରକେ ପଡ଼ଇ । ନରକୁଁ ପୁଣ ସ୍ୱର୍ଗେ ଯାଇ ।
ଏଣୁ ଏ ଦ୍ୱିବିଧ ସମାନ । ବନ୍ଧନ ନୁହଇଟି ଆନ ॥
ଦୁର୍ଲଭ୍ୟ ଦୃଢ଼କର୍ମ ପାଶ । ଯେଉଁରୂପେ ହୋଇବ ବିନାଶ ॥
ଭାଇ ଉଚିତ କହୁଁ ଶୁଣ । ସ୍ୱଗୁରୁ ଉପଦେଶ ଘେନ ।
ତାନ୍ତ୍ରିକ ଦଣ୍ଡବ ବୈଷ୍ଣବ । ପାପର ମଧ୍ୟେ ଯେ ନ ଥିବ ।
ତାହାଙ୍କ ଠାରୁଁ ଉପଦେଶ । ଘେନିଣ କରିବ ବିଶ୍ୱାସ ।
ସର୍ବ ସୁକର୍ମ ମଧ୍ୟେ ସାର । ହେ ମନ କୃଷ୍ଣ ଆଶ୍ରେକର ।
ଦେହ ସମ୍ପଦ ଗୃହବାସ । ଦାରା ତନୟ ଦାସୀ ଦାସ
ଯେ ପିତୃଦାନ ଯଜ୍ଞଦାନ । ଏଆଦି ପୁଣ୍ୟକର୍ମମାନ ।
ଯେ ତୀର୍ଥକ୍ରିୟା ଜପତପ । ସବୁହିଁ କୃଷ୍ଣଙ୍କୁ ସମର୍ପ ।
କର୍ମଲେ ଉଦ୍ଧ ଭୁ କଷେଲେ । ସାଷ୍ଟସ୍ୱରୂପେ ଗୃହମେଳେ ।
ଅଥବା ବଳେ ଦେଖାନ୍ତିଇ । ସମାନ ଏ ଦୁଇ ପ୍ରକାର ।
ଯଜ୍ଞାଦି ପୂଜା ନାନା ଦାନ । ଏସବୁ ଧର୍ମେ ପ୍ରୟୋଜନ ।
ବେଦାଦି ପୁରାଣ ପଠନ । ଏ ବିଦ୍ୟାବନ୍ତିଇ ସାଧନ ।
ଦୟା ବିନୟ କ୍ଷମା ସେବା । ବିଜ୍ଞାନୁସାରେ ଥିଲେ ଦେବା ।
ସାଧୁ ସଙ୍ଗରେ ସାଧୁମତେ । ହଉ ଭଜନ୍ତି ସତ୍ୟବ୍ରତେ ।
ପଣ୍ଡିଲ ଛନ୍ଦ ବିଦ୍ୟାଧନ । ଏଥିବି ନ ଲୋଡ଼ି ଏମାନ ।

ଏ ବଚନକୁ ଶୁଣନ୍ତେ । ସୁଜଣେ ସାଧୁ ଅନ୍ତରରେ ।
ଏ ଧର୍ମେ ଧର୍ମବନ୍ଧ ଫିଟି । ଲୋଡ଼ି ଯେସନେ ଲୋଡ଼େ ନାହିଁ ॥
ଉତ୍ତମ ଲୋଡ଼ ଯେବେ ହୋଇ । ଯାବତ ଲୋଡ଼କୁ କାଟଇ ।
ଉତ୍ତମ ପଥ ଭଜ ହରି । ଏ ଧର୍ମେ ଧର୍ମବନ୍ଧୁଂ ତର ।
ତୁ ଅବା ବନ୍ଧନକୁ ଛନ୍ତେ । କୃଷ୍ଣହିଁ ଧର୍ମର ଆସ୍ପଦେ ।
ଯେ ଧର୍ମବନ୍ଧେ ଏତେ ସହ । ସେ କି ଯାଉବେ ଧର୍ମ ବହି ।
କହିବା ଏଥିର କାରଣ । ଶୁଣି ସଂଶୟ ହର ଦୂର ।
ଯେ ପରଂବ୍ରହ୍ମ ଜଗନ୍ନାଥ । ଅଧର୍ମ ଅନାଦି ଈଶ୍ୱର ।
କରଣ କାରଣ କରତା । ଅଖିଳଲୋକ ପିତାମାତା ।
ଧର୍ମସ୍ୱରୂପୀ ସେ ଆପଣ । ଜଗତ ଧର୍ମର ଭିଆଣ ।
ଧର୍ମ ତାହାର ଗଢ଼ ଦାଣ୍ଡ । ଝୁଲନ୍ତି ବ୍ରହ୍ମାଦି ବ୍ରହ୍ମାଣ୍ଡ ।
ଉତ୍ପତ୍ତି ସ୍ଥିତି ସୃଷ୍ଟି କ୍ଷୟେ । ଏ ସର୍ବ ଧର୍ମର ଉଦୟେ ।
ନାସ୍ତବଜନ ମନେ ଧର । ଏ ଭଜନ ମାର୍ଗେ ଧର୍ମ ତଳ ।
ଏ ଭଜନପଥେ ଅଗୋଚର । ଏଣୁ ସେ ଧର୍ମରୁ ବାହାର ।
ଯେ ଥାଇ ଧର୍ମବନ୍ଧେ ପଡ଼ି । ଧର୍ମ ନ ପାରେ ତାକୁ ମିଶି ।
ଧର୍ମସ୍ଥାପନେ ଅବତାର । ଧର୍ମକୁ କରଇ ପ୍ରଚାର ।
ବାହ୍ୟରେ ଧର୍ମ ବନ୍ଧେ ଥାଇ । ଧର୍ମର ମହିମା ବଢ଼ାଇ ।
ଜଗତ ଧର୍ମପଥେ ଲକ୍ଷି । ସାକ୍ଷି ସ୍ୱରୂପେ ପଦ୍ମଆଖି ।
ଧର୍ମ ସେ ତାହାର କିଙ୍କର । ସେ ଧର୍ମପଥୁଁ ଅଛି ଦୂର ।
ଦୃଷ୍ଟି ଶ୍ରବଣ ବାହ୍ୟ ପରେ । ଇନ୍ଦ୍ରିୟ ଅଧିକାର ଯେତେ ।
ଦେଖିବା ଶୁଣିବା କହିବା । ଛୁଇଁବା ମନେ ଚିନ୍ତିବା ।
ଏ ସବୁ ଧର୍ମ ବୋଲି ଜାଣ । ଏଥି ଅନ୍ତର ଭଗବାନ ।
ଧର୍ମ କେବଳ ମାୟା ତାର । ବ୍ରହ୍ମାଣ୍ଡ ଧର୍ମରୁ ସାର ।

କଟାକ୍ଷ ମାତ୍ରକେ ଗୋବିନ୍ଦ । ନାଶେ ଅଶେଷ କର୍ମବନ୍ଧ ॥
ଅଜ୍ଞକୁ ଭକ୍ଷ୍ୟଦାନ କଲେ । କୁବ୍ଜାକୁ ଶୋଭାବଣି ଦେଲେ ॥
ଜନକ ବୈକୁଣ୍ଠକୁ ନେଲ । ବାଳକରେ ବ୍ରହ୍ମପଦ ଦେଲ ॥
ପିତା ଦ୍ରୋହୀକ ଇନ୍ଦ୍ରଧାରୀ । ଇନ୍ଦ୍ରକୁ ଦେଲେ ସେ ପଦଭି ॥
ଶ୍ରୀଭଗ୍ୟଂ ବଳା ପାତାଳର । ବ୍ୟାଧ ଗଣିକା ସ୍ୱର୍ଗପୁର ॥
ଅମ୍ବରୀଷକୁ ପକ୍ଷ କଲେ । ଦୁର୍ବାସା ଋଷିଙ୍କି ଦଣ୍ଡିଲେ ॥
ରାବଣ ସ୍ୱବଂଶ ନାଶନ । ସୁଦାମା ଦାରିଦ୍ର୍ୟ ଭଞ୍ଜନ ॥
ଗୁରୁଙ୍କ ପୁତ୍ର ମରିଥିଲେ । ଯମଭୁବନୁ ଆଣି ଦେଲେ ॥
ବ୍ରହ୍ମା ବାସବ ଗର୍ବ ଗଞ୍ଜି । ଗୋପୀ ଗୋପାଳ ମନ ରଞ୍ଜି ॥
ଆଉ ଅଦ୍ଭୁତ କର୍ମ ଯେତେ । କେ ସଙ୍ଖ୍ୟା କରିବ ଜଗତେ ॥
ପତିତ ଯେତେ ଉଦ୍ଧାରିଲେ । କାହୁଁ ସରବ ସେ ଗଣିଲେ ॥
ନଟକ ତଷ ବଷ୍ଟକର୍ମା । ଯା ଅନ୍ତ ନାର ବେଦ ବ୍ରହ୍ମା ॥
ଅଶେଷ ବ୍ରହ୍ମାଣ୍ଡଠାରୁର । ପରମ ବ୍ରହ୍ମଙ୍କ ଉପର ॥
ଦେଖ ଗୋପୀଙ୍କ ଗ୍ରବକଲେ । ଷୋଳସହସ୍ର ରୂପ ହେଲେ ॥
ତାଙ୍କ କରୁଣା ଯେବେ ଥାଇ । ଅଧର୍ମେ ଧର୍ମ ଫଳ ଦେଇ ॥
ତରଣେ ବଞ୍ଚିଲା ଶବର । ସ୍ୱଦେହେଁ ଗଲା ସ୍ୱର୍ଗପୁର ॥
ଯେ ପ୍ରାଣୀ ତାହାରେ ବିମୁଖ । ଅଶେଷ ଧର୍ମେ ନାହିଁ ସୁଖ ॥
ଏଥିର ଇଚ୍ଛା ଶକ୍ତି ତାର । ସକଳ କର୍ମ ତା କିଙ୍କର ॥
କର୍ମ କରିବା ସେ ଅଟଇ । କର୍ମ ତା ଅଜ୍ଞାରେ ଖଟଇ ॥
ଅଶେଷ କର୍ମପାଶ ହର । ହେଲେ ଯ.ଇଇ ଅନ୍ୟ ନର ॥
ତୁ ଏଥି ସନ୍ଦେହ ନ କର । ଶରଣ ପଶ ଗୋବିନ୍ଦର ॥
ଆଦର୍ଯ୍ୟ ପଞ୍ଚେ ଯେ ଉଦ୍ଧଇ । କରଣ ତାକୁ ନ ଲାଗଇ ॥
ଏଣୁ ଯେ କୃଷ୍ଣ ଅଶେ କର । କର୍ମ ନ ପାରେ ତାକୁ ଧଇ ॥

ରାଜା ସମାନ ଲୋକ ଦେଖି । ନ ପାରେ ଚାହିଁଥାଇ ରହି ॥
ଧରି ନ ପାରେ କହୁଥାଇ । ସେ ରାଜା ତେଜେ ବନ୍ଦଥାଇ ॥
ସେ ଯେବେ ଦୋଷଚାରୀ ଜନ । ଦଣ୍ଡି ନ ପାରେ ତାକୁ ଆନ ॥
ଦଣ୍ଡୁ ବା ମଣ୍ଡୁ ମହାରାଜା । ତାହାକୁ ଡରନ୍ତି ପରଜା ॥
ଏରୂପେ କୃଷ୍ଣ ଅଂଶ ଜନେ । ଦେଖି ପଳାନ୍ତି ଯମଗଣେ ॥
ସେ ଉଦେ ହୋଇଲେ ଗର୍ଭସ୍ଥେ । ପ୍ରଦୀପ ପରେ ତମ ଦୂରସ୍ଥେ ॥
ସେ ଯେଣୁ ସୂର୍ଯ୍ୟପରେ ଥାଇ । ତା ଦୋଷ ତାକୁ ନ ଲାଗଇ ॥
ଏରୂପେ କୃଷ୍ଣ ପକ୍ଷ ଧରି । ସଂସାରସାଗରୁ ଉଦ୍ଧରି ॥
ଗୋବିନ୍ଦ ପଦ୍ମ ପାଦେ ରସ । ରସିକଜନ ସଙ୍ଗେ ବସ ॥
ଯେ ସାଧୁ ଭେଟରେ ଆରମ୍ଭ । ଛୁଟେ କପଟ ହିଂସା ଦମ୍ଭ ॥
ତାହାଙ୍କୁ ଦୂରୁ ପ୍ରଣମିବ । କେବେହେଁ ସଙ୍ଗ ନ କରିବ ॥
ଦୟା ବିନୟ କ୍ଷମା ସତ । ପରମାନନ୍ଦ ପ୍ରେମେ ଯୁକ୍ତ ॥
ଛାପା ତିଳକ ମାଳା ଶୋଭେ । ନିବର୍ତ୍ତି କାମ କ୍ରୋଧ ଲୋଭେ ॥
କୃଷ୍ଣର ଶ୍ରବଣ କଥନ । ଅଶ୍ରୁ ପ୍ରବାହର ଲୋଚନ ॥
ପୁଲକ ପ୍ରକାଶଇ ଅଙ୍ଗ । ହୃଦୟ ଦ୍ରବ ସ୍ୱରଭଙ୍ଗ ॥
କଣ୍ଠ ର ବାକ୍ୟ ଗଦଗଦ । ଧରଇ ଭକ୍ତଜନ-ପାଦ ॥
ଏମନ୍ତ ସାଧୁସଙ୍ଗ କର । ପ୍ରେମ ପ୍ରକାଶିବ ହୃଦର ॥
ଯେଉଁଦିନୁ ପ୍ରେମ ପ୍ରକାଶିବ । ଭକତ ହୋଇବ ସଜୀବ ॥
ସଜୀବ ଭକ୍ତିର ବଶରେ । କୃଷ୍ଣ ପ୍ରାପତ ପଥ ବଶେ ॥
ଲଭିବୁ ଶ୍ରୀ ପୁରୁଷୋତ୍ତମ । ଭକତ ମୁକତ ଉତ୍ତମ ॥
ତରିବୁ ଆପଣୁ ତାରିବୁ । ଉଭୟ ବଂଶ ଉଦ୍ଧରିବୁ ॥
ହୋଇବ ଭକତ ଉତ୍ତମ । ଛୁଟିବ ଘୋର ମାୟା ଭ୍ରମ ॥
ଯେ ଲୋକେ ଦର୍ଶନ କରିବ । ସେ ଭବ ଜନ୍ମ ଉଦ୍ଧରିବ ॥

ଏ ବୈଷ୍ଣବର ମହିମା । ଶୁଣ ହୋ ମନ ମହାତ୍ମା ॥
ଏମନ୍ତ ଜ୍ଞାନର ବଚନ । ଶୁଣି ସନ୍ତୋଷ ହେଲା ମନ ॥
ଏ ଭାବେ ଉପାସନା କର । ହୋଇଲେ ଦୃଢ଼ ପ୍ରାଣଧାରୀ ॥
ସ୍ୱଚରିତ୍ରବ ଅଜ୍ଞାନ । କୃଷ୍ଣଙ୍କୁ ନ ଜାଣନ୍ତି ଆନ ॥
ସାଧୁ ସଙ୍ଗରେ କୃଷ୍ଣ ଭଜ । ହିଂସା କପଟ ଦୂରେ ତେଜ ॥
ଦୟା କରସ୍ୱ କ୍ଷମା ସେବା । ଶକ୍ତି ଅନୁରୂପେ କରିବା ॥
ଏ ପଥେ ପରମ ଆନନ୍ଦେ । କୃଷ୍ଣ ଚରଣଅରବିନ୍ଦେ ॥
ଏ ମନ ହୋଇଲା ମଧୁପ । ବୈଷ୍ଣବ ଦାସ କବି ଭୂପ ॥
ପଶ୍ଚିମା ବସ୍ତୁ ସାରସ୍ୱତ । ନାମ ଯେ ରୂପଣ ପଣ୍ଡିତ ॥
ଶ୍ରୀ ଗଜପତି ଗୌଡ଼େଶ୍ୱର । ଉତ୍କଳ ଦେଶର ଠାକୁର ॥
ଯେ ନବକୋଟି କର୍ଣ୍ଣାଟକ । ଉତ୍କଳ ବର୍ଗର ନାୟକ ॥
ଏ ଅବ ଲୋକ ଚତୁର୍ବର୍ଣ୍ଣ । ପୂରିତ ଯାହାର ସୁଯଶ ॥
ଜଗନ୍ନାଥଙ୍କ ଛତ୍ର ଶିରେ । ଏଣୁ ଏ ବଡ଼ ଜଗତରେ ॥
ପୂର୍ବେ ଏ ଓଡ଼ିଶା ରାଜ୍ୟର । ଶ୍ରୀ ଇନ୍ଦ୍ରଦ୍ୟୁମ୍ନ ନୃପବର ॥
ତାହାଙ୍କ ଆଜ୍ଞା ପରମାଣେ । ବ୍ରହ୍ମା ଆଇଲେ ଏ ଭୁବନେ ॥
ବ୍ରହ୍ମା ମାଗିଲେ ଆଜ୍ଞା ଯାର । ଇତର ଜନ କେଉଁ ଛାର ॥
ଏହାଙ୍କ ଶିରେ ଛତ୍ରୀ ହେଉ । ଏହି ପ୍ରତ୍ୟକ୍ଷେ ଦୃଷ୍ଟଦେଖ ॥
ଏ ବୀରବର ବରିଷ୍ଠ । ନାମ ଶ୍ରୀ ଦିବ୍ୟସିଂହ ଦେବ ॥
ଲକ୍ଷେ ରାଜାଙ୍କ ଚୂଡ଼ାମଣି । ସୁନ୍ଦର ଯଣେ ଅଛନ୍ତି ଗଣି ॥
କନ୍ଦର୍ପ ସମ କୋଟିଏ ରୂପେ । ପୃଥ୍ୱୀକି ପୂରିତ ପ୍ରତାପେ ॥
ପଣ୍ଡିତ ମଧ୍ୟେ ସୁବିବେକ । ସଙ୍ଗୀତ ବିଦ୍ୟାରେ ରସିକ ॥
ସବଶାସ୍ତ୍ର-ଅନୁଭବୀ । ଶ୍ରୀକୃଷ୍ଣରସ-କାବ୍ୟ କବି ॥
ପ୍ରଜାପାଳକ ଦୟାବନ୍ତ । ଦସ୍ୟୁକୁ ଦାରା ପରହିତ ॥

ଏବେ ଲକ୍ଷଣେ ସେ ସଜ୍ଜନ । ତାହାଙ୍କୁ କର ଦରଶନ ।
କୀର୍ତ୍ତି ନବହୁ ବର୍ଣ୍ଣିବାର । ଶୁଣି ସନ୍ତୋଷ ହୃଦୟର ।
ଧନ ବସନ ଭୂମିଦାନ । ଦେଲେ ସେ ହୋଇ ସୁପ୍ରସନ୍ନ ।
ଦେଖି ଅନୁଗତ ବିଶେଷ । ଛାଡ଼ି ଅଇଲି ନିଜ ଦେଶ ।
ତାହାଙ୍କ ଅନ୍ନ ଜଳ ଖାଇ । ସୁଖେ ତାହାଙ୍କ ରାଜ୍ୟେ ଥାଇ ।
ନଗରି ନାମ ଭଦ୍ରପୁର । ନଗର ପଶ୍ଚିମେ ମୋ ଘର ।
ପଶ୍ଚିମ ଭାଷାରେ କହନ୍ତି । ବଙ୍ଗଳା ଭାଷା ବୁଝନ୍ତି ।
ଉତ୍କଳଭାଷା ନବଶିକ୍ଷା । ମେ ହୋଇ ବୈଷ୍ଣବ ପକ୍ଷା ।
ଶ୍ରୀ ବ୍ରଜରାଜେନ୍ଦ୍ର କୁମର । ଯଶୋର କୃଷ୍ଣ ବେଣୁଧର ।
ତାହାଙ୍କୁ ସଖାଭାବେ ଭଜ । ନିର୍ମଳପ୍ରେମେ ମନ ରଞ୍ଜି ।
ଶ୍ରୀକୃଷ୍ଣଚରଣେ ବିଶ୍ୱାସ । ନାମ ଶ୍ରୀ ଚୈତନ୍ୟ ଦାସ ।
ମହନ୍ତ ଶୁଦ୍ଧ ବୈଷ୍ଣବ । ଗୋପିକା ଭକ୍ତି ତାଙ୍କଭାବ ।
ଶ୍ରୀପୁରୁଷୋତ୍ତମରେ ଘର । ଶୁଦ୍ଧ ପଶ୍ଚିମ ପାଶ୍ୱର ।
ପୂର୍ବେ ସେ କପାଳ ମୋଚନ । ପଶ୍ଚିମେ ଲୋକେଶ୍ୱର ସ୍ଥାନ ।
ଏ ଦୁଇ ଶିବଙ୍କ ମଧ୍ୟର । ମଠ ଚୈତନ୍ୟ ଦାସଙ୍କର ।
ତାହାଙ୍କ ସଙ୍ଗେ ମୋ ପୀରତି । ତାହାଙ୍କ ଲକ୍ଷ୍ମୀ ଯେ ପାଇଛି ।
ଆଜ୍ଞା ହୋଇଲା ତାହାଙ୍କର । ଉତ୍କଳଭାଷା କାବ୍ୟ କର ।
ଚୌତିଶା ଚଉପଦୀ ଗୀତ । ବର୍ଣ୍ଣ ହୋ ଗୋବିନ୍ଦଚରିତ ।
ତାହାଙ୍କ ଆଜ୍ଞା ଘେନ ଶିରେ । ମନ ଶ୍ରୀକୃଷ୍ଣ ଚରଣରେ ।
ସୁଧା ସମୁଦ୍ର ପୂରିଥାଇ । ଅଣ୍ଡ ଦୂରର ଶଗ ଦେଇ ।
ଅଦ୍ଭୁତ ଗୋବିନ୍ଦ ଚରିତ । ଚୌତିଶା ଚଉପଦୀ ଗୀତ ।
କରଇଁ ବୁଦ୍ଧି ଅନୁସାରେ । ଶୁଣାଇଁ ତାହାଙ୍କ ଛାମୁରେ ।
ସେ ପୁଣି କୃଷ୍ଣ ପ୍ରସନ୍ନ । ଅଚନେ ବାନ୍ତି ଅଳଙ୍କତ ।

ଏରୂପେ କୃଷ୍ଣ ଭାବାନ୍ତର । ଏହି ଦୁର୍ଲଭ ଲଭ ମୋର ॥
ଶ୍ରୀ ଦିବ୍ୟସିଂହ ଧରାଧର । ସମସ୍ତ ଉଠର ଅଙ୍କର ॥
ମକର ମାସ ଶୁକ୍ଳପକ୍ଷ । ତିଥି ତ୍ରୟୋଦଶୀ ତୁରକ୍ଷ ॥
ଗୋଧୂଳି ସୋମବାର ଦିନ । ଏ ଗ୍ରନ୍ଥ ହୋଇଲା ସମ୍ପୂର୍ଣ୍ଣ ॥
ଏ ପଞ୍ଚାଧ୍ୟାୟ ପଦଯୁକ୍ତ । ଭୂରିଷଟ୍‌ପଦ ନବଶତ ॥
ଅଧିକ ସପତ ଉଭୟ । ଏ ପ୍ରେମପଞ୍ଚାମୃତ ରସ ॥
ଯେବେ ତୋ ବ୍ରହ୍ମଜ୍ଞାନେ ମନ । ଏ ଗ୍ରନ୍ଥ କର ହେ ପଠନ ॥
ଯେବେ ତୋ ପ୍ରେମ ଭକ୍ତି ଦୃଢ଼ । ତେବେ ତୁ ଏ ଉତ୍ତର ପଢ଼ ॥
ବେଦାନ୍ତ ତତ୍ତ୍ୱ ଯେବେ ଲୋଡ଼ୁ । ଏ ଗ୍ରନ୍ଥ କ୍ଷଣାର୍ଦ୍ଧେ ନ ଛାଡ଼ୁ ॥
ଶୃଙ୍ଗାର ରସେ ଯେବେ ଚିତ୍ତ । ତେବେହେଁ ପଢ଼ ଏ ଉଚିତ ॥
କୃଷ୍ଣପ୍ରେମେ ଯେବେ ଇଚ୍ଛା । ଏ ଗ୍ରନ୍ଥ ପଢ଼ି କର ଶିକ୍ଷା ॥
ସାଧୁସଙ୍ଗ ଭକ୍ତ ଜନ । ଏ ଗ୍ରନ୍ଥ ମଧ୍ୟେ ଜାଣିବ ॥
ଜାଜାଦ ଶାସ୍ତ୍ର ଜାଣିଛ । ଯେ ନିଷ୍ଠ ବେଦାନ୍ତ ସଂରତ ॥
ଯେ ଜନ୍ମ ଉପାସନା ମତ । ପରମ ପ୍ରେମ ମର୍ମ ତତ୍ତ୍ୱ ॥
ଯେ ଧର୍ମ ଅର୍ଥ ମୋକ୍ଷ କାମୀ । ସକଳ ଧର୍ମ ଏଥି ଜାଣି ॥
ଗୋବିନ୍ଦ ଗୁଣ ପୂର୍ଣ୍ଣ ପଦ । ଦଶସ୍ୱାଦଶତୁ ଏ ଗଦ ॥
ସକଳ ମନୋରଥ ଦାତା । ଶ୍ରୀକୃଷ୍ଣ ଲୀଳା କଳ୍ପଲତା ॥
ସ୍ମରଣେ ଏଣେ ଦଅ ଚିତ୍ତ । ଏ ଭବସାଗରେ ବୋଇତ ॥
ଦିବ୍ୟ ନୃପତି ସ୍ତବେ ଭଣି । ରକ୍ଷିବେ ଶଙ୍ଖ ଚକ୍ରପାଣି ॥୨୬୪॥

ଇତି ଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତିବିଭେଦ ସ୍ତବକେ ମନଶ୍ଚକ୍ଷୁ ପଞ୍ଚାକ୍ଷର ସମ୍ବାଦେ ଧର୍ମବନ୍ଧ ମୋକ୍ଷଣେ ନାମ ପଞ୍ଚମୋଽଧ୍ୟାୟଃ ।

ସମ୍ପୂର୍ଣ୍ଣ ।

—•❋§✱§❋•—